# ମୋ ଭାଷା ମୋ ସାହିତ୍ୟ

## ସୌରୀବଂଧୁ କର

ପ୍ରକାଶକ :
**ସିଦ୍ଧାର୍ଥ କୁମାର କର**
ଗଦ୍ୟ ପ୍ରକାଶନୀ, ପ୍ଲଟ ନଂ ୫୦୧୨/୫୮୫୩
ଗଜପତି ନଗର, ଭୁବନେଶ୍ୱର-୭୫୧୦୦୫

ପ୍ରଥମ ସଂସ୍କରଣ :

ବିଜୟା ଦଶମୀ, ୧୯୯୬

ମୂଲ୍ୟ : ଟ ୩୦-୦୦

ମୁଦ୍ରଣ : ବୁଦ୍ଧେଶ୍ୱରୀ ପ୍ରେସ
ଭୁବନେଶ୍ୱର-୭୫୧୦୦୬

# MY LANGUAGE MY LITERATURE

## SOURIBANDHU KAR

Publisher :
**Siddharth Kumar Kar**
Gadya Prakashani, Plot No. 5012/5853
Gajapati Nagar, Bhubaneswar-751005

Cover Design :
**Ramahari Jena**

First Edition :
Vijaya Dashami, 1996

Price : **Rs. 30.00**

Printer :
**Buddheswari Press**
Bhubaneswar-751006

---

ପରିବେଷକ : ଓଡ଼ିଶା ଲେଖକ ସମବାୟ ସମିତି ଲି:
Qr. No. 29/4 Type IVR Unit-II, ଅଶୋକ ନଗର, ଭୁବନେଶ୍ୱର-୯

ଅଦୃଶ୍ୟ ଓ ଅଯାଚିତ ସହୃଦୟତାର ଯଶସ୍ୱୀ

ପ୍ରଗତିବାଦୀର ସଂପାଦକ ଶ୍ରୀଯୁକ୍ତ ପ୍ରଦ୍ୟୁମ୍ନ ବଲଙ୍କୁ............

ସୌମ୍ୟବଂଧୁ କର

# ମୁଖବନ୍ଧ

'ମୋ ଭାଷା ମୋ ସାହିତ୍ୟ' ସମ୍ପର୍କରେ ଦୁ'ପଦ ଲେଖିବାର ଆବଶ୍ୟକତା ରହିଛି । ଏହା 'ପ୍ରଗତିବାଦୀ' ଦୈନିକ ପୃଷ୍ଠାରେ ପ୍ରାୟ ଦୀର୍ଘଦିନ ହେଲା ପ୍ରକାଶିତ ହୋଇ ଆସୁଅଛି । ସେହି ପ୍ରକାଶିତ ରଚନାକୁ ଏକାଠି ସଂଲଗ୍ନ କରି ବହି ଆକାରରେ ପ୍ରସ୍ତୁତ କରିବାବେଳେ କାହିଁକି ଏହାକୁ ବନ୍ଦ କରାଯିବ ବୋଲି ମନରେ ପ୍ରଶ୍ନ ଉଠିଲା । ଏହା ଭାଷା ସାହିତ୍ୟରେ କି ମୂଲ୍ୟ ରଖିବ, ଏହି ବିଷୟର ଲେଖିବା ଆରମ୍ଭ କରିବାବେଳେ ମଧ୍ୟ ମନକୁ ଆସିଥିଲା । ପ୍ରତ୍ୟେକ ସପ୍ତାହରେ ଯେତେବେଳେ ଏହା ପ୍ରକାଶ ପାଉଥିଲା, ସେତେବେଳେ ଏହା ବିଭିନ୍ନ ମହଲରେ କିଛିଟା ହଇଚଇ ସୃଷ୍ଟିକଲା କାରଣ କୌଣସି କୌଣସି କଥାକୁ ଆଦୌ ପୃଷ୍ଠ ଦିଆନଯାଇ ଓ ନିଜର ଗଠନମୂଳକ ମତାମତଦେଇ କୁହାଯାଇଥିଲା ।

ପୁସ୍ତକରେ ଥିବା ଲେଖାଗୁଡ଼ିକ ତିନିଗୋଟି ପର୍ଯ୍ୟାୟଭୁକ୍ତ । ପ୍ରଥମତଃ ବିଶିଷ୍ଟ ସାହିତ୍ୟିକମାନଙ୍କର ସ୍ମୃତିଚାରଣ ଯେଉଁମାନଙ୍କ ସହିତ ବ୍ୟକ୍ତିଗତ ସ୍ତରରେ ସମ୍ପର୍କ ରହିଥିଲା ବା ଭଲଭାବେ ଜାଣିବାର ସୁଯୋଗ ମିଳିଥିଲା । ଦ୍ୱିତୀୟରେ କିଛି ସାହିତ୍ୟ ସଭା, ସମିତି ଓ ଉପସ୍ଥିତ ବକ୍ତା ଓ ଶ୍ରୋତାମାନଙ୍କର ମୂଲ୍ୟବାନ ମନ୍ତବ୍ୟରୁ କେତେଗୁଡ଼ିଏ ବିଷୟକୁ ନେଇ ଆଲୋଚନା କରାଯାଇଛି ଏବଂ ଶେଷ ପର୍ଯ୍ୟାୟଟି ହେଉଛି ବିଭିନ୍ନ ସାହିତ୍ୟ, ଭାଷା, ଅନୁଷ୍ଠାନ ଓ ବିଦ୍ୱାନମାନଙ୍କ ବିଷୟରେ ନିଜସ୍ୱ ବିଚାର ।

ଏମିତି ଲେଖିବାର ଉଦ୍ଦେଶ୍ୟ ଓଡ଼ିଆ ସାହିତ୍ୟରେ କେହି କାହା ବିଷୟରେ ଲେଖେନି । ମୃତ୍ୟୁ ସଭାଟିଏ ହେଲେ ସ୍ମୃତିଚାରଣ ଅବଶ୍ୟ କରିଥାନ୍ତି; କିନ୍ତୁ ନିଜ ହାତରେ ଲେଖି ଇତିହାସ ପୃଷ୍ଠାରେ ତା'ର ସ୍ୱାକ୍ଷର ରଖିଯିବା ଏହା ହୋଇ ପାରେନା । ଆମେ ଓଡ଼ିଆମାନେ ଏତେ ଭୟାଳୁ ଯେ କାହା ଉପରେ ବା କାହା ମନ୍ତବ୍ୟ ଉପରେ ମତାମତଦେବାକୁ କୁଣ୍ଠାପ୍ରକାଶ କରୁ । ଯଦି ବି ଭାବୁ, ଆମେ ଆଦୌ ଭୟାଳୁ ନୋହୁଁ, ତେବେ କାଲେ କିଏ କ'ଣ ଭାବିବ, ଏହି ନ୍ୟାୟରେ କାଦୁଅକୁ ଯିବୁ କାହିଁକି, ଗୋଡ ଧୋଇବୁ, ଏ ବିଷୟର ବେଶୀ ଓଜନ ହୋଇଯାଏ । ପୁସ୍ତକ ଆଲୋଚନା ବା ସମାଲୋଚନା ଭିନ୍ନ କଥା କିନ୍ତୁ ପୁସ୍ତକଟିକୁ ଏକ ବିଷୟ-ଯୋଗ୍ୟ ଭୂମିକାରେ ଦେଖିବା ଓ ପାଠକ ନିକଟରେ ତା'ର ବିଶେଷତା ସମ୍ପର୍କରେ ପରିଚିତ କରାଇବାର ଆବଶ୍ୟକତା ଗୁରୁତ୍ୱପୂର୍ଣ୍ଣ, ଏହାକୁ ଅସ୍ୱୀକାର କରାଯାଇ ପାରେନା ।

ବହୁ ସମୟରେ ଆମେ ଅତି ବେଶୀ ପ୍ରଶଂସା ବା ଅତି ବେଶୀ ନିନ୍ଦା କିମ୍ବା ବ୍ୟକ୍ତିଗତ ଈର୍ଷା ଓ ଅସୂୟା ସ୍ତରକୁ ଖସିଆସୁ । ପ୍ରକୃତ ମୂଲ୍ୟାଙ୍କନ ବା ବିଚାର କରୁନା । ଆମେ ଜଣେ ଜଣେ ବଡ଼ ଲେଖକ, କବିଙ୍କଠାରୁ କ'ଣ ଆଶା କରୁ, ଯାହା ଆମର ସାର୍ବଜନୀନ ସାଂଗଠନିକ ବିକାଶରେ ସହାୟକ ହେବ, ତାହା ମଧ୍ୟ ପ୍ରକାଶ କରିବାରେ କୁଣ୍ଠାବୋଧ କରୁ ।

'ମୋ ଭାଷା ମୋ ସାହିତ୍ୟ'ର ଏହି ସ୍ତମ୍ଭଟିକୁ ପ୍ରଗତିବାଦୀ ପୃଷ୍ଠାରେ ଆରମ୍ଭ କରିବାବେଳେ, ମୋ ମନରେ, ମୋ ନିଜ ଉପରେ ସନ୍ଦେହ ସୃଷ୍ଟି ହୋଇଥିଲା । କାରଣ ଯାହା ଆମେ ମନରେ ଭାବୁଛୁ, ସେହି ସତ୍ୟକୁ ପ୍ରକାଶ କରିବା କ'ଣ ସହଜ ? ଏହି ଦ୍ୱିଧାଗ୍ରସ୍ତ ଓ ଶଙ୍କିତ ମନନେଇ ଲେଖିବାକୁ ଆରମ୍ଭ କରିବା ମାତ୍ରେ ହୃଦୟର ଦ୍ୱାର ଉନ୍ମୁକ୍ତ ହୋଇ ଯାଇଥିଲା ଓ କ୍ରମଶଃ ସତ୍ୟ ତା'ର ସ୍ୱକୀୟ ପରିଚୟ ଲେଖା ମାଧ୍ୟମରେ ଦେବାକୁ ଲାଗିଲା ।

ଏହି ପୁସ୍ତକଟି ଏକ ମୂଲ୍ୟବାନ ସାହିତ୍ୟ ଗ୍ରନ୍ଥ ହୋଇ ନପାରେ କିନ୍ତୁ ଏହା ସାହିତ୍ୟ ଇତିହାସରେ କିଛି ଭୂମିକା ଯଥୋପଯୁକ୍ତ ତୁଲାଇବ ବୋଲି ମୋର ବିଶ୍ୱାସ । ପ୍ରଗତିବାଦୀ ସ୍ତମ୍ଭରେ ଲେଖିବାବେଳେ ବହୁ ବନ୍ଧୁ ଏହାକୁ ପଢ଼ି ମୋତେ ମୋର ଏ ପ୍ରକାର ମତ ପ୍ରତି ସମର୍ଥନ ଜଣାଇ ଉତ୍ସାହ ଦେଇଛନ୍ତି । ସେମାନେ ତ ଅନେକ । ତେବେ କେତେଜଣଙ୍କ ନାମ ଉଲ୍ଲେଖ ନ କଲେ ଠିକ୍ ହେବନି । ଉମାପଦ, ଅଶୋକ ପାଲିତ, ସୁଭାଷ ଶତପଥୀ, ଦୀପକ ବାସାଙ୍କ ପରି ତରୁଣଙ୍କ ଠାରୁ ପ୍ରବୀଣ ସୂର୍ଯ୍ୟକାନ୍ତ ଦାସ, ଚିତ୍ତରଂଜନ ଦାସ ଓ ସ୍ୱାଧୀନତା ସଂଗ୍ରାମୀ ନନ୍ଦକିଶୋର ପଟ୍ଟନାୟକ ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତିଙ୍କ ପର୍ଯ୍ୟନ୍ତ ବ୍ୟକ୍ତି ବିଶେଷଙ୍କ ପ୍ରତି କୃତଜ୍ଞ ।

ବହିଟିର କୌଣସି କୌଣସି ଲେଖାରେ ନାମକରଣ ସମାନ ହୋଇଥିଲେ ହେଁ ବିଷୟବସ୍ତୁ ଭିନ୍ନ । ଏହା ବିଭିନ୍ନ ସମୟରେ ଲେଖା ହୋଇଛି ମଧ୍ୟ । ନାମ ଅନୁଯାୟୀ ସଙ୍କଳିକରଣ କରିଥିଲେ ଅଧିକ ରୁଚିଶୀଳ ଓ ମର୍ଯ୍ୟାଦାବନ୍ତ ହୋଇଥାନ୍ତା ବୋଲି ହୁଏତ ପାଠକ ବର୍ଗ୍ଗ ବିଚାର କରିପାରନ୍ତି କିନ୍ତୁ ବିଷୟ ବସ୍ତୁରେ ବିଭିନ୍ନତା ହେତୁ, ଏହାକୁ ଠିକ୍ ସେହିପରି ରଖାଯାଇଛି ।

ପ୍ରଗତିବାଦୀ ପୃଷ୍ଠାରେ ଏହା ପ୍ରତି ସପ୍ତାହରେ ପାଠକମାନଙ୍କ ନିକଟରେ ପହଞ୍ଚାଇବାରେ ମୋତେ "ପ୍ରଗତିବାଦୀ"ର ସଂପାଦକ ପ୍ରଦ୍ୟୁମ୍ନ ବାବୁ ଓ ରବିବାବୁ ଏବଂ ଶ୍ରଦ୍ଧେୟ ଶ୍ରୀ ସନ୍ତୋଷ ବଳ ଯେଉଁ ସାହାଯ୍ୟ କରିଛନ୍ତି, ତାହା ଚିରଦିନ ସ୍ମରଣୀୟ । ସେହି ଅଭୁଲା ଆତିଥେୟତାକୁ ମନରେ ରଖି ଏହି ପୁସ୍ତକଟିକୁ ସମ୍ମାନନୀୟ ଶ୍ରୀଯୁକ୍ତ ପ୍ରଦ୍ୟୁମ୍ନ ବଳଙ୍କୁ ମଧ୍ୟ ଉତ୍ସର୍ଗ କରୁଛି ।

ଭିନ୍ନ ରୁଚି ଓ ଭିନ୍ନ ଭାବନାରେ ପୁଷ୍ଟ "ମୋ ଭାଷା ମୋ ସାହିତ୍ୟ" ପାଠକ-ମାନଙ୍କର ଆଦୃତ ହେବ ବୋଲି ଆଶା ।

ବିଜୟା ଦଶମୀ
ତା ୨୨ । ୧୦ । ୧୯୯୬

ସୌରୀବନ୍ଧୁ କର

# ସୂଚୀପତ୍ର

# ସତ୍ୟଂ ବଦାମି

ଦୀର୍ଘ କେତେଦିନଧରି 'ପ୍ରଗତିବାଦୀ'ରେ 'ବେଦାନ୍ତର ସ୍ୱର' ଶୀର୍ଷକରେ ଅନେକ ବିଷୟ ଅବତାରଣା କରିବା ପରେ ତା'ର ପୂର୍ଣ୍ଣଚ୍ଛେଦ ଘଟାଇ ପୁଣି କ'ଣ ଲେଖିବି ବୋଲି ଭାବୁଥିଲି । ଲେଖିବା ପାଇଁ ଭାବିବାବେଳେ ମନକୁ କେତେ କଥା ଆସେ । ଗାଳ୍ପିକଟିଏ ଗପ ଲେଖେ, କବି କବିତାରେ ମଗ୍ନ ହୋଇଯାଏ । ଯାହାର ଯାହା ମନକୁ ଆସିଲା, ସେ ଜଣେ କୁଶଳୀ ସ୍ରଷ୍ଟା ହେବାର ଅଭିଳାଷ ରଖି ତା'ର ଲେଖନୀରେ ନୂଆପୁଟ ଦିଏ । ଲେଖିବା ଏକ କଳା, ଭାବିବା କଳାସୃଷ୍ଟିର ପୂର୍ବକାର୍ଯ୍ୟ । ଭାବିବା ଓ ଲେଖିବା ଉଭୟ କାର୍ଯ୍ୟ ହେଲେ ସୃଷ୍ଟି ଜନମାନସ ନିକଟରେ ପହଞ୍ଚେ । ଯେଉଁମାନଙ୍କୁ ଆମେ କହୁ ପାଠକ; ବସ୍ତୁ ହୋଇଥିଲେ କହିଥାନ୍ତୁ ଗ୍ରାହକ ।

ତେଣୁ ମନରେ ପ୍ରଶ୍ନ ଉଠେ ପାଠକ ନିକଟରେ ଆମେ କ'ଣ ଲେଖି ଉପସ୍ଥାପିତ କରିବୁ । ଏଇ ପାଠକ କିଏ ? ସମାଜରେ ଅନେକ ଲୋକ, ଅନେକ ଜାତି, ଅନେକ ଭାଷା, ଅନେକ ଭାବନା । ତେଣୁ କାହା ପାଇଁ ଲେଖିବା । ରାଜଧାନୀ ରାସ୍ତାରେ ଯାଉଥିବା ରିକ୍ସାବାଲାର କଥା, ରାସ୍ତାକଡ଼ ଝୁମ୍ପୁଡ଼ି ଦୋକାନୀର ବ୍ୟଥା, ବେକାର ଯୁବକର ଧାରଣା, ରାଜନୈତିକ ନେତାମାନଙ୍କର ଖିଆଲ, ସଭା ଓ ଧାରଣାଠାରୁ ଆରମ୍ଭକରି କେତେ ସୀମାହୀନ ଅସରନ୍ତି ସମସ୍ୟା । ଘରୁ ବାହାରିବାବେଳୁ ଘରେ ପହଞ୍ଚିଥିବା ପର୍ଯ୍ୟନ୍ତ କେତେ ଜଟିଳ ସମସ୍ୟା, କେତେ ଅଭିନବ ଚରିତମାନେ ଆମେ ଦେଖୁ । କାହା କଥା ଭାବିବା ଓ କାହା କଥା ଲେଖିବା ? ଲେଖିବା ଅର୍ଥ ନୁହେଁ ଯାହା ମନକୁ ଆସିବ, ତାକୁ ଲେଖିଯିବା ଏବଂ ବାହାସ୍ଫୋଟ ମାରି କହିବା ଆମେ ଧାନଗଛ, କଦଳୀଗଛ ଇତ୍ୟାଦି ଲେଖି ପକାଇଛୁ । ମିଛରେ କେତେକଥା ଲେଖି-ଦେଇଛୁ । କ'ଣ ଲେଖିବା ଓ କାହା କଥା ଲେଖିବା ଏହି କଥା ଭାବି ଭାବି ଅନେକ ଦିନ ବିତିଗଲା ପରେ ହଠାତ୍ ମନକୁ ଆସିଲା ସତ କଥା କିଛି ଲେଖିବା । ସତକଥା କହିବା କ'ଣ ସହଜ । ଯଦି ସହଜ ହୋଇଥାନ୍ତା, ତେବେ ସମସ୍ତେ ସତ କହୁଥାନ୍ତେ । ମୁଁ ବା କେମିତି କହିପାରିବି ଯେ ସେମାନେ ସତ କହୁନାହାନ୍ତି । ସତ୍ୟ କହିବା ବଡ଼ କଷ୍ଟ ବୋଲି କୁହାଯାଇଛି । ଏପରିକି ଯୁଧିଷ୍ଠିର ମଧ୍ୟ ନିଜେ ସ୍ୱାର୍ଥକୁ ଦୃଷ୍ଟିରେ ରଖି ଟିକିଏ ମିଛ କହିଦେବାର ଉଲ୍ଲେଖ ରହିଛି । କାରଣ ଜାଣିକି ସତ କଥାରେ ରାଜ୍ୟକୁ ରକ୍ଷାକରି ହେବନି ବୋଲି ତାଙ୍କୁ ବୁଝାଇ ଦିଆଗଲା ।

ତେଣୁ ମୋ ମନରେ ଏକ ପ୍ରଶ୍ନ ଉଠିଲା ଯେ, ଯଦି ସତ୍ୟ କହିବା କଷ୍ଟ ତେବେ ଲେଖକ, କବିମାନଙ୍କୁ ସତ୍ୟଦ୍ରଷ୍ଟା କହିବାର ଯଥାର୍ଥତା କେଉଁଠି ? କ'ଣ ସେମାନେ କେବଳ ସତ୍ୟକୁ ଦେଖନ୍ତି କିନ୍ତୁ କହନ୍ତି ନାହିଁ ? ତେବେ ସତ୍ୟକୁ କିଏ କହୁଛି ? ସଂସାରରେ ଏତେଲୋକ, ଏତେ ଜୀବଜନ୍ତୁ କେହି କ'ଣ ସତ୍ୟ କହୁ ନାହାନ୍ତି । ଏ ସତ୍ୟଟି କ'ଣ ସତେ ?

ଗାନ୍ଧିଜୀ କହିଲେ— "ସତ୍ୟ ହିଁ ଈଶ୍ୱର" । ଗାନ୍ଧିଜୀ ନିଜର ରାଜନୈତିକ ବିଚାରଧାରାକୁ ସତ୍ୟ ଉପରେ ଆଧାରିତ କରି କାର୍ଯ୍ୟରେ ପରିଣତ କରିବାକୁ ଲାଗିବା ଫଳରେ ସ୍ୱାଧୀନତା ଆନ୍ଦୋଳନ ସଫଳ ହୋଇ ପାରିଲା । ସେ ତାଙ୍କର ଆତ୍ମଜୀବନୀ "My experiment with truth" ପୁସ୍ତକରେ ଏହାର ନାନା ଉଦାହରଣ ଓ ଘଟଣା ଉଲ୍ଲେଖ କରିଛନ୍ତି । ଗାନ୍ଧିଜୀ ସତ୍ୟକୁ ଆଧାର କରି ତାଙ୍କର କାର୍ଯ୍ୟପନ୍ଥା ନେଇଥିବାରୁ କାହିଁକି ସତ୍ୟ କୁହାଯାଇପାରିବ ନାହିଁ ବା ଲେଖା ଯାଇପାରିବ ନାହିଁ ଏକଥା ବିଚାର କରି ମୁଁ 'ସତ୍ୟଂ ବଦାମି' ଏହି ଶୀର୍ଷକରେ ଲେଖିବି ବୋଲି ସ୍ଥିର କରି ଲେଖିବାକୁ ଆରମ୍ଭ କରିଛି ।

ମୁଁ କ'ଣ ସତରେ ସତ୍ୟ କହିପାରିବି ? ବୋଧହୁଏ ହଁ—ବୋଧହୁଏ ନା । ସତ କହିବାର ସାହସ ଯଦି ମୋର ଥାଆନ୍ତା, ତେବେ ମୁଁ ଏ ଯାବତ୍ ମିଛ କାହିଁକି କହିଥାନ୍ତି । ସମାଜରେ ବଞ୍ଚିବାକୁ ହେଲେ ସତ କହିଲେ ବଞ୍ଚି ହେବନି, ସତ କହିଲେ ଅର୍ଥ ମିଳିବନି, ସାହିତ୍ୟ ପୁରସ୍କାର କଥା ଦୂରେ ଥାଉ । କିନ୍ତୁ ଚେଷ୍ଟା କରାଯାଇପାରେ । ଅନ୍ୟ ଅନେକ କଥା ସତ୍ୟରେ କହିବା ପୂର୍ବରୁ ମୋ ଭାଷା, ସାହିତ୍ୟ ସମ୍ପର୍କରେ ସତ୍ୟ କହିଲେ କ୍ଷତି କେଉଁଠି ? ସାହିତ୍ୟିକମାନେ ସତ୍ୟଦ୍ରଷ୍ଟା ଓ ସତ କହୁଥିବେ ବୋଲି ମୋର ବିଶ୍ୱାସ । କେମିତି ଜାଣିବି ଯେ ସେମାନେ ସତ୍ୟ କହୁଛନ୍ତି ବୋଲି । ଜଣ ଜଣକୁ ପଚାରିଲେ କେମିତି ହୁଅନ୍ତା । ମୋ ଭାଷାରେ ଅନେକ ବରେଣ୍ୟ, ଯଶସ୍ୱୀ ଗାଳ୍ପିକ, ଔପନ୍ୟାସିକ, କବି, ନାଟ୍ୟକାର ଓ ପ୍ରାବନ୍ଧିକ । ପ୍ରଥମେ ସେମାନଙ୍କର ଏକ ଲମ୍ବା ତାଲିକା କରି ସେହି ତାଲିକାରୁ ଜଣକ ପରେ ଜଣେ କେତେ ସତ୍ୟକଥା ତାଙ୍କ ସାହିତ୍ୟରେ ସେ କହିଛନ୍ତି କିମ୍ବା ଜୀବନରେ ବା ଆଚରଣରେ ପ୍ରଦର୍ଶନ କରୁଛନ୍ତି, ତାଙ୍କୁ ପ୍ରଥମେ ଦେଖାକରି ପଚାରିବି । ପ୍ରଥମେ କାହାକୁ ପଚାରିବି । ମନରେ ଭୟ । ଯଦି ସେମାନେ ନ କହନ୍ତି । ସତ୍ୟ କ'ଣ କହି ହୁଏ । ଏହା ଅନୁଭବର କଥା । ରାମକୃଷ୍ଣ ପରମହଂସ ମା' କାଳୀଙ୍କ ଦେହରେ ବ୍ରହ୍ମ ଉପଲବ୍ଧି କରିଥିଲେ । ଏହି ସତ୍ୟକୁ ସେ ନିଜ ଆଚରଣରେ, ଅନୁଭୂତିରେ ଗ୍ରହଣ କରିଥିବା ହେତୁ ଅନେକେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ସେହି ହେତୁ ଯେଉଁମାନେ ସତ୍ୟ ପ୍ରତି ଅନୁରକ୍ତି ପ୍ରକାଶ କରୁଛନ୍ତି, ତାଙ୍କ ପ୍ରତି ସମସ୍ତେ ଆକୃଷ୍ଟ ହେବେ ଓ ସେ ଅନ୍ୟମାନଙ୍କୁ ଆକର୍ଷିତ

କରିବେ; ଏହି ମାପକାଠିରେ ମୂଲ୍ୟାଙ୍କନ କଲାବେଳେ କାହାକୁ ପ୍ରଥମେ ପଚାରିବ "ସେ ସତ କହୁଛନ୍ତି କି ?" ଏହାହିଁ ଏକ ଗମ୍ଭୀର ଚିନ୍ତାର ବିଷୟ । ତେବେ ମୁଁ ଯଦି ମୋ ନିଜକୁ ପ୍ରଶ୍ନକରେ—"ତୁମେ ସତ୍ୟ କହୁଛ କି ?" ତେବେ ମୁଁ କି ଉତ୍ତର ଦେବି । ମୋର ଉତ୍ତର କ'ଣ ମୁଁ ସତ୍ୟ କହୁଛି ହେବ ନା ସତ୍ୟ କହିବି ବୋଲି କହିବି । ବୋଧହୁଏ ମୁଁ 'ସତ୍ୟଂ ବଦାମି' କହିପାରେ । ସତ କହୁଛି ବୋଲି କହି ପାରିବି ନାହିଁ ।

ତେବେ କ'ଣ 'ସତ୍ୟଂ ବଦାମି' ? ମୋ ଭାଷା ଓ ମୋ ସାହିତ୍ୟ ସମ୍ପର୍କରେ ଏତେ ଦିନ ପରେ ମୋର ଆତ୍ମ ବିଶ୍ୱାସ ହେଲା ମୁଁ ସତ କହିବି; ସତ କହିବା ବ୍ୟତୀତ ଅନ୍ୟ କିଛି କହିବି ନାହିଁ ।



# ପୁସ୍ତକ ମେଳା

ମୋ ଭାଷା ସଂପର୍କରେ ସତ କହୁଛୁ ବୋଲି ଯେତେବେଳେ ଶପଥ କରୁଛୁ, ସତ ଛଡ଼ା କିଛି ମିଛ କହିବ ନାହିଁ । ଏଇ ନିକଟରେ ମୋ ଭାଷା ସାହିତ୍ୟକୁ ଲୋକ-ମାନଙ୍କ ନିକଟରେ, ପାଠକମାନଙ୍କ ପାଖରେ ପହଞ୍ଚାଇ ଦେବାପାଇଁ ଭୁବନେଶ୍ୱର ପୁସ୍ତକମେଳା-୯୪ ଅନୁଷ୍ଠିତ ହୋଇ ଶେଷ ହୋଇଛି । ପୁସ୍ତକ ମେଳାରେ ଅନେକ ଗୁଡ଼ିଏ ଶ୍ରେଷ୍ଠ ବଡ଼ ପୁସ୍ତକ ଷ୍ଟଲ ଖୋଲିଥିଲା । କଟକ ବାଲୁବଜାରର ବଡ଼ ବଡ଼ ପ୍ରକାଶନ ସଂସ୍ଥାଠାରୁ ଆରମ୍ଭ କରି କେନ୍ଦ୍ର ସାହିତ୍ୟ ଏକାଡେମୀ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟର ଷ୍ଟଲମାନ ଏଥିରେ ଭାଗ ନେଇଥିଲେ । ମେଳାରେ ଥିଲା ସର୍ବମୋଟ ୧୬୦ଟି ଷ୍ଟଲ । ପ୍ରତ୍ୟେକ ଦିନ ଅନେକ ସାହିତ୍ୟିକ ବନ୍ଧୁ ମେଳାକୁ ଆସୁଥିଲେ । ପରସ୍ପରକୁ ଭେଟୁଥିଲେ, କଥା ହେଉଥିଲେ । ତସଲିମା ନସରିନ୍‌ଙ୍କର 'ଲଜ୍ଜା'ର ଓଡ଼ିଆ ଅନୁବାଦ ପ୍ରକାଶିତ ହୋଇ ଉନ୍ମୋଚିତ ହୋଇଥିଲା । ସେ ଦିନ 'ଫ୍ରେଣ୍ଡସ୍ ପବ୍ଲିଶର୍ସ' ଷ୍ଟଲରେ ଥିଲା ଭୀଷଣ ଭିଡ଼ । ନନ୍ଦିନୀ ଦେବୀଙ୍କ ଠାରୁ ଅଟୋଗ୍ରାଫ୍ ପାଇବାକୁ ଅନେକେ ବ୍ୟସ୍ତ ଥିଲେ ।

ପୁସ୍ତକମେଳାଠାରେ କବିତା ପାଠୋତ୍ସବ, ଗଳ୍ପ ପାଠୋତ୍ସବ, ନାଟକ ଆଲୋଚନାଚକ୍ର ଅନୁଷ୍ଠିତ ହେବା ସଙ୍ଗେ ସଙ୍ଗେ ସାରଳା ସ୍ମାରକ ତରଫରୁ ସଭା, ସ୍ୱାମୀ ବିବେକାନନ୍ଦଙ୍କର ଚିକାଗୋଠାରେ ଯୋଗଦେବାର ଏକଶହ ବର୍ଷ ପୂର୍ତ୍ତି ଉପଲକ୍ଷେ ସଭା ହୋଇଥିଲା । ଓଡ଼ିଶାର ଖବରକାଗଜରେ ପୁସ୍ତକମେଳା ସଂପର୍କରେ ଖବର, ଆଲୋଚନା ପ୍ରକାଶ ପାଇଥିଲା । ମୋଟାମୋଟି କହିଲେ ଭୁବନେଶ୍ୱର ପୁସ୍ତକମେଳା-୧୯୯୪ ଦୀର୍ଘ ଦଶଦିନ ଭାଷା ସାହିତ୍ୟର ପାଣିପାଗକୁ ବେଶ୍ ସରଗରମ କରି ରଖିପାରିଥିଲା ।

ପୁସ୍ତକମେଳା ଲେଖକ ଓ ପାଠକମାନଙ୍କ ମଧ୍ୟରେ ସଂପର୍କ ରକ୍ଷାର ଏକ ସିଧାସଳଖ ମାଧ୍ୟମ । ପାଠକ ନିଜର ମନମୁତାବକ ବହିଟିଏ ପାଇବ, ଅନେକ ବହିର ନାଁ ଦେଖିବ, ତାର ରୁଚି ଅନୁଯାୟୀ ବହି ବାଛିବ, ଏଇ ସୁଯୋଗ ଏଇ ମେଳାରୁ ଅନେକଙ୍କୁ ମିଳିଥିଲା । ଏପରି ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ପାଇଁ ଯେଉଁମାନେ ଏହାକୁ କରିଛନ୍ତି ସେମାନେ ଧନ୍ୟବାଦ ପାଇବେ ନିଶ୍ଚୟ । କିନ୍ତୁ ଗୋଟିଏ

କଥା ମନକୁ ବେଶୀ ଆସୁଥିଲା । ଓଡ଼ିଆ ଭାଷାର କେତେ ପୁସ୍ତକ ବିକ୍ରୀ ହେଉଛି ? କାହା କାହା ବହି, କେଉଁ କେଉଁ ଲେଖକ ପାଠକର ହୃଦୟକୁ ଅତି ବେଶୀ ଝାଙ୍କୋଡ଼ି ଧରିଛନ୍ତି ଏକଥା ଜଣାଗଲା ନାହିଁ । ବର୍ଷକୁ କାଁ ଭାଁ କେତେ ଗୁଡ଼ିଏ ଉପନ୍ୟାସ, କେତେ ଗୁଡ଼ିଏ ଗଳ୍ପ ସଙ୍କଳନ । ଗୋଟିଏ ସଂସ୍କରଣ ବହି ସରିବାକୁ ଦଶବର୍ଷ ଲାଗୁଛି । ଦ୍ୱିତୀୟ ସଂସ୍କରଣ ଆଉ ଦେଖିବାକୁ ମିଳୁନି । ଭାଷା ସାହିତ୍ୟକୁ ଏକ ଆନ୍ଦୋଳନ ଭାବରେ ଗଢ଼ି ତୋଳିବାର ଯେଉଁ ଆବଶ୍ୟକତା ତାହା ଏଯାବତ୍ ହେଲା ନାହିଁ । ଓଡ଼ିଆ ଭାଷାର ଉନ୍ନତି ପାଇଁ ଅନେକ ଅଭିଯୋଗ । ସରକାରୀ ପ୍ରୋତ୍ସାହନର ଅଭାବ, ଅଭିଧାନର ଅଭାବ, ସାହିତ୍ୟ ଏକାଡେମୀର ବିମୁଖତା, ପ୍ରକାଶକମାନଙ୍କର ନୂତନ ପୁସ୍ତକ ପ୍ରକାଶ କରିବାର ପ୍ରଚେଷ୍ଟାର ଅଭାବ ଇତ୍ୟାଦି ଅନେକ ଅଭିଯୋଗ । ଅଭିଯୋଗର ଶେଷ ନଥିବା ବେଳେ ଓଡ଼ିଶାରେ ସାହିତ୍ୟ ସଗଠନ ବଢ଼ିବାରେ ଲାଗିଛି ଓ ତା ସହିତ ପୁରସ୍କାର ଓ ସମ୍ବର୍ଦ୍ଧନା । ପ୍ରତ୍ୟେକ ସାହିତ୍ୟ ସଂଗଠନର ମୂଳକାର୍ଯ୍ୟ ପୁରସ୍କାର ଦେବା ଓ ସମ୍ବର୍ଦ୍ଧନା ଦେବା ହୋଇଛି । ପତ୍ରିକା ମଧ୍ୟ ପ୍ରକାଶ ପାଉଛି । ଏସବୁ ସତ୍ତ୍ୱେ ଓଡ଼ିଆ ଭାଷାର ବିକାଶ ଘଟୁନି ବୋଲି ବହୁ ଆଲୋଚନା ଓ ସମାଲୋଚନା ଚାଲିଛି । ଆମେ ଏଯାବତ୍ ଆମର ପୂର୍ବସୂରୀ ମହାକବି ଶୂଦ୍ରମୁନି ସାରଳା ଦାସଙ୍କୁ ଟପିପାରିନୁ ବୋଲି ମତ ପ୍ରକାଶ ପାଇଛି । ଏହି ନିଛକ ସତ କଥାଟିକୁ ପ୍ରଥମେ ବିଚାର କରିବା ଦରକାର । ପାଞ୍ଚଶହ ବର୍ଷତଳୁ ସାରଳା ମହାଭାରତ ଓଡ଼ିଶାର ସାରସ୍ୱତ ଜୀବନକୁ ଆଚ୍ଛନ୍ନ କରିଛି ଏବଂ ତାହା ଏ ପର୍ଯ୍ୟନ୍ତ ଅବ୍ୟାହତ ରହିଛି । କାରଣ ସାରଳା ମହାଭାରତ ଉତ୍କଳର ଶିକ୍ଷା, ସଭ୍ୟତା ଓ ସଂସ୍କୃତିର ଏକ ଜ୍ଞାନକୋଷ । ଏଥିରେ ରହିଛି ସାରସ୍ୱତ ସେବାପରାୟଣତା ଓ ଜାତୀୟ ଗୌରବବୋଧର ଆବେଗଶୀଳତା । ଏଣୁ ସାରଳା ମହାଭାରତ ଶାଶ୍ୱତ । ସାରଳା ଦାସ ଚିର ଅମ୍ଳାନ । ସେ ମୁନି, ସତ୍ୟଦ୍ରଷ୍ଟା ପାଲଟି ଯାଇଛନ୍ତି । କେବଳ ଜଣେ ସତ୍ୟଦ୍ରଷ୍ଟା ହିଁ ଉଚ୍ଚାଙ୍ଗ ସାହିତ୍ୟ, ଚିର ଆଦୃତ ସାହିତ୍ୟ ସୃଷ୍ଟି କରିପାରେ; ଅନ୍ୟମାନେ ପାରିବେ ନାହିଁ । ଭାଷା ସାହିତ୍ୟର ବିକାଶ ପାଇଁ ଆମେ କେତେ ସତ୍ୟନିଷ୍ଠ । ଆମେ ସତ୍ୟନିଷ୍ଠ ହେଉ ନ ଥିବାରୁ କ'ଣ ବଜାରରେ ଆମ ବହି ବିକ୍ରି ହୋଇ ପାରୁନି ? ବା ପାଠକକୁ ଏହା ଆକୃଷ୍ଟ କରିପାରୁନି ?

ଆମେ କେବଳ ପରସ୍ପରର କୁତ୍ସା, ସମାଲୋଚନା ଭିତରେ ବଞ୍ଚୁଛୁ । ଆମ ଭିତରେ ଥିବା ଆତ୍ମବିଶ୍ୱାସ ହୀନମନ୍ୟତାରେ ରୂପାନ୍ତରିତ ହୋଇଯାଉଛି ଏବଂ ଏହି ହୀନମନ୍ୟତା ଆମକୁ ମୂଲ୍ୟବୋଧ ଠାରୁ ଦୂରକୁ ଫିଙ୍ଗିଦେବା ଦ୍ୱାରା ଆମେ ସତ୍ୟନିଷ୍ଠ ହୋଇପାରୁ ନାହୁଁ । ସତ୍ୟନିଷ୍ଠତା ସାହିତ୍ୟ ପ୍ରତି ଅଙ୍ଗୀକାରବଦ୍ଧତାକୁ ବୃଦ୍ଧି କରେ । ଏହି ପରିପ୍ରେକ୍ଷୀରେ 'ଲଜ୍ଜା'କୁ ବିଚାର କରାଯାଉ । ଅନୁଦିତ 'ଲଜ୍ଜା'କୁ ପଢ଼ି

ବୋଧ ହେଲା ସେଥିରେ କଳା କୁଶଳତା ଯେତେ ଫୁଟିବା କଥା ସେତେ ନଥିଲେ ହେଁ, ଯାହା ସତ୍ୟ ତାକୁ ନିର୍ଭୀକ ଭାବେ ଉପସ୍ଥାପିତ କରିବାରେ ତସଲିମା ସକ୍ଷମ ହୋଇଛନ୍ତି । ବୋଧହୁଏ ସେଇଥିପାଇଁ ଏହାର ଆଦୃତ ।

ତେବେ କ'ଣ ଆମେ ଏହି ସତ୍ୟରେ ଉପନୀତ ହେବା ଯେ ସତ୍ୟଶୀଳ ସୃଷ୍ଟି ହିଁ ପାଠକୀୟ ଆବେଗକୁ ଧରି ରଖିବାକୁ ସକ୍ଷମ ଓ ଚିରଶାଶ୍ୱତ । ଯଦି ତାହା ହୁଏ; ତେବେ ମୁଁ କ'ଣ ମୋ ନିଜକୁ ପ୍ରଶ୍ନ କରିବି— "ଏ ଚେଷ୍ଟାରେ ତୁମେ ଜଣେ ସୈନିକ ହେବ କି ?"



# ଲେଖକ ଦିବସ

ଆମ ଦେଶରେ ଗୋଟିଏ ଗୋଟିଏ ଦିନକୁ ବିଶେଷଭାବେ ମନେରଖିବା ପାଇଁ ତାହାକୁ କୌଣସି ଦିବସ ନାମରେ ନାମିତ କରାଯାଇ ପାଳନ କରାଯାଏ । ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ, ଶିଶୁ ଦିବସ, ଯୁବ ଦିବସ, ଗୁରୁ ଦିବସ ଇତ୍ୟାଦି । କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ସ୍ମରଣ କରିବା ପାଇଁ ବା କୌଣସି ଗୋଟିଏ ବିଶେଷ ଘଟଣାକୁ ସ୍ମୃତିରେ ସାଇତି ରଖିବାକୁ ଦିବସ ପାଳନ କରିବାର ତାତ୍ପର୍ଯ୍ୟ ରହିଛି । ଠିକ୍ ସେହିପରି ଭାଷା ସାହିତ୍ୟ ପ୍ରତି ଯେଉଁମାନଙ୍କର ଅବଦାନ ରହିଛି, ସେମାନଙ୍କ ନାମରେ କୌଣସି ଦିବସ ପାଳନ ଏଯାବତ୍ ହୋଇନଥିବାବେଳେ ଏ ବର୍ଷଠାରୁ ପଞ୍ଜାବ ଲେଖକମାନଙ୍କର ଏକ ବିଶିଷ୍ଟ ଲେଖକ ସଙ୍ଗଠନ କେନ୍ଦ୍ରୀୟ ପଞ୍ଜାବୀ ଲେଖକ ସଭା ସେପ୍ଟେମ୍ବର ୨୫ ତାରିଖକୁ 'ଲେଖକ ଦିବସ' ରୂପେ ପାଳନ କରିବାକୁ ସ୍ଥିର କରିଛନ୍ତି । ଏହା ନିଶ୍ଚିତ ଭାବେ ଏକ ସ୍ୱାଗତଯୋଗ୍ୟ, ବାସ୍ତବ ଓ ବଳିଷ୍ଠ ପଦକ୍ଷେପ ।

ସେପ୍ଟେମ୍ବର ୨୫ ତାରିଖକୁ ଲେଖକ ଦିବସ ଭାବେ ପାଳନ କରିବାର କାରଣ ହେଉଛି ସୁଫି ସନ୍ଥ ବାବା ଫରିଦ୍‌ଙ୍କର ଏହା ଜନ୍ମଦିବସ ଏବଂ ସେ ପଞ୍ଜାବୀ ଭାଷାର ପ୍ରଥମ କବି ଭାବେ ସର୍ବଜନ ଜଣାଶୁଣା । ତାଙ୍କ ସ୍ମୃତିକୁ ମନେରଖିବା ପାଇଁ ଏବଂ ସମସ୍ତ ପଞ୍ଜାବୀ ଲେଖକମାନଙ୍କ ଭିତରେ ନିଜ ଭାଷା ସାହିତ୍ୟ ପ୍ରତି ଆନୁଗତ୍ୟ ଓ ଅନୁରକ୍ତି ପ୍ରକାଶ ପାଇଁ ଏହି ଲେଖକ ଦିବସ । ସମଗ୍ର ଭାରତରେ ଏହା ପ୍ରଥମ । ଏହି ଦିବସରେ ଯୋଗଦେବା ପାଇଁ ସବୁ ପଞ୍ଜାବୀ ଲେଖକମାନଙ୍କୁ ଅନୁରୋଧ କରାଯିବା ସହିତ ଯେଉଁମାନେ ବିଦେଶରେ ଅଛନ୍ତି, ସେମାନଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଛି ।

ଏହି ଅବସରରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଏହି ସଭା ଦ୍ୱାରା ଗ୍ରହଣ କରାଯାଇଛି । ପ୍ରତ୍ୟେକ ବର୍ଷ ଏହି ଦିନ ବିଭିନ୍ନ ବିଭାଗରେ ଲେଖୁଥିବା ପ୍ରତିଭାବାନ୍ ଲେଖକମାନଙ୍କୁ ପନ୍ଦରଗୋଟି ପୁରସ୍କାର ଦେବାର ବ୍ୟବସ୍ଥା ରହିଛି ଏବଂ ସେହି ପୁରସ୍କାରଗୁଡ଼ିକ ମଧ୍ୟ ପଞ୍ଜାବର ପନ୍ଦର ଜଣ ବିଶିଷ୍ଟ ସାହିତ୍ୟିକଙ୍କ ନାମରେ ନାମିତ ହେବ । ଯେଉଁ ସାହିତ୍ୟିକମାନେ ପଞ୍ଜାବୀ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି, ସେମାନଙ୍କର ସ୍ମୃତି ଓ ଅମ୍ଳାନ୍ ପ୍ରତିଭାକୁ ସଦାସର୍ବଦା ଜାଗ୍ରତ କରି ରଖିବା ଏହାର ଉଦ୍ଦେଶ୍ୟ । ପଞ୍ଜାବୀ ଲେଖକ ସଭାର ଏ ପ୍ରକାର ଏକ ବଳିଷ୍ଠ ଓ ଅଭିନବ ପଦକ୍ଷେପ ନିଶ୍ଚିତ ଭାବେ ଅନ୍ୟମାନଙ୍କ ନିମନ୍ତେ ପ୍ରେରଣାପ୍ରଦ ।

ଏ ପରିପ୍ରେକ୍ଷୀରେ ଓଡ଼ିଶା ସମ୍ପର୍କରେ ବିଚାର କରାଯାଉ । ସାରଳାଙ୍କ ନାମରେ କେତେଗୁଡ଼ିଏ ଘରୋଇ ଅନୁଷ୍ଠାନ ପୁରସ୍କାର ଆରମ୍ଭ କରିଛନ୍ତି । କିନ୍ତୁ ସରକାରଙ୍କ ତରଫରୁ ବା ଏକାଡେମୀ ଦ୍ୱାରା କୌଣସି ପଦକ୍ଷେପ ନିଆଯାଇନାହିଁ । ଓଡ଼ିଶା ସାହିତ୍ୟ ଏକାଡେମୀ ଦେଉଥିବା ପୁରସ୍କାରକୁ ବିଭିନ୍ନ ବରିଷ୍ଠ ଲେଖକମାନଙ୍କ ନାମରେ ନାମିତ କରିଦେବାର କୌଣସି ଅସୁବିଧା ନାହିଁ । ଠିକ୍ ସେହିପରି ପ୍ରତ୍ୟେକ ବର୍ଷ ଦିଆଯାଉଥିବା ପୁରସ୍କାରକୁ କୌଣସି ଏକ ନିର୍ଦ୍ଦିଷ୍ଟ ଲେଖକଙ୍କ ଜନ୍ମଦିବସ ଅବସରରେ 'ଲେଖକ ଦିବସ' ଘୋଷଣା କରି ଏହି ପୁରସ୍କାର ଦିଆଯାଇପାରନ୍ତା ।

କିନ୍ତୁ ଏହା ଏପର୍ଯ୍ୟନ୍ତ ହୋଇନାହିଁ; ହୁଏତ ଭବିଷ୍ୟତରେ ହୋଇପାରେ । ଏ ବିଷୟରେ ଆଲୋଚନା ହେବା ଆବଶ୍ୟକ । କେଉଁ କେଉଁ ବରିଷ୍ଠ ସାହିତ୍ୟିକ ଲେଖକ ବା କବିମାନଙ୍କୁ ଓଡ଼ିଆ ସାହିତ୍ୟର ପ୍ରତିନିଧି ଭାବରେ ନିଆଯିବ, ତାହା ସ୍ଥିର କରାଯାଇ ପୁରସ୍କାରକୁ ସେହି ନାମରେ ନାମିତ କରାଯିବାର ବ୍ୟବସ୍ଥା ଆସନ୍ତା ବର୍ଷଠାରୁ ହେବାପାଇଁ ଏକାଡେମୀ ପଦକ୍ଷେପ ନେଉ । ବରେଣ୍ୟ ସ୍ରଷ୍ଟାମାନଙ୍କର ଫଟୋଚିତ୍ରରେ କେବଳ ବର୍ଷକୁ ଥରେ ମାଲ୍ୟାର୍ପଣ କଲେ ହେବନାହିଁ, ସମୟକ୍ରମେ ସେମାନଙ୍କର ସ୍ମୃତି ପାଇଁ ବିଧିବଦ୍ଧ ପଦକ୍ଷେପ ଗ୍ରହଣ କରାଯାଉ ।

ସେପ୍ଟେମ୍ବର ୨୫ ତାରିଖକୁ ପଞ୍ଜାବୀ ଲେଖକମାନେ ଲେଖକ ଦିବସ ପାଳନ କରିବା ପରି ଆମେ ଓଡ଼ିଶାରେ ଏକତ୍ର ହେବାର ସୁଯୋଗ ସୃଷ୍ଟି କରାଯାଉ । ଏ ସୁଯୋଗ ସୃଷ୍ଟି କରିବାର ଏକମାତ୍ର ପ୍ରତିନିଧି ସଂସ୍ଥା 'ଓଡ଼ିଶା ସାହିତ୍ୟ ଏକାଡେମୀ' । ଏକାଡେମୀ ଏ ବିଷୟରେ ଭାବୁ ।

# ଜଗଦୀଶ ପାଣି

ପୁଣି ଆଉ ଜଣେ ଚାଲିଗଲେ । ଯେ ଯାଉଛି ସେ ଫେରି ଆସୁନାହିଁ । ଫେରି ଆସିବାର ସମ୍ଭାବନା ମଧ୍ୟ ନାହିଁ । ମହାକାଳ କାହାକୁ ଅପେକ୍ଷା ନକରି ତାର ବାହୁ ପ୍ରସାରିତ କରି ଜଣକୁ ଜଣକୁ ଧରି ନେଇଯାଉଛି । ପୂଜା ସମ୍ଭାରକୁ ଋଦ୍ଧିମନ୍ତ କରି ଏକ ବର୍ଣ୍ଣାଢ୍ୟ ଓ ଆଭିଜାତ୍ୟପୂର୍ଣ୍ଣ ପତ୍ରିକା 'ସମାବେଶ'କୁ ପ୍ରକାଶିତ କରିବା ପୂର୍ବରୁ ଜଗଦୀଶ ପାଣି ଆମକୁ ଛାଡ଼ି ଚାଲିଯାଇଛନ୍ତି ।

ଜଗଦୀଶ ପାଣି ଏକ ନାମ ନୁହେଁ, ଏକ ଅନୁଷ୍ଠାନ । କ୍ୱାଲିଟି ପ୍ରେସ୍‌ର ସତ୍ତ୍ୱାଧିକାରୀ ଜଗଦୀଶ ବାବୁ ନିଜର ସ୍ୱଭାବସୁଲଭ ମଣିଷ ପଣିଆ ଦ୍ୱାରା ବହୁ ଲୋକଙ୍କର ପ୍ରୀତିଭାଜନ ହୋଇଥିଲେ । ରାଜନୈତିକ ନେତାଠାରୁ ଆରମ୍ଭ କରି, ସାହିତ୍ୟିକ ଓ ସାଧାରଣ ଲୋକମାନଙ୍କ ମଧ୍ୟରେ ଜଗଦୀଶ ବାବୁ ଥିଲେ ଅତି ପ୍ରିୟ । କେହି ତାଙ୍କ ପାଖରୁ ଲେଉଟି ଯାଏନାହିଁ । ଅମାୟିକ ହସ ହସି ସମସ୍ତଙ୍କର ମନକୁ, ହୃଦୟକୁ ଜୟ କରିବାର ଶକ୍ତି ତାଙ୍କ ପାଖରେ ଥିଲା ।

ଗତବର୍ଷ ପୂଜା ପରେ ତାଙ୍କ ଘରକୁ ଯାଇଥାଏ ବିଶିଷ୍ଟ ଗାଳ୍ପିକ ଡକ୍ଟର କୃଷ୍ଣପ୍ରସାଦ ମିଶ୍ରଙ୍କ ସହିତ । ଆଦରରେ ବସାଇ ଚା' ଜଳଖିଆ ଦିଅନ୍ତି । ସମାବେଶ ପତ୍ରିକା ଖଣ୍ଡିଏ ଲେଖାଏ ବଢ଼ାଇ ଦିଅନ୍ତି । କେତେ ରୁଚିପୂର୍ଣ୍ଣ ସେହି ପତ୍ରିକା ଯେ କେହି ଦେଖିବା ମାତ୍ରେ କହିବ । ଦୀର୍ଘ ୨ଘଣ୍ଟା ଧରି ତାଙ୍କ ସହିତ ଆଲୋଚନା ହୁଏ । କୃଷ୍ଣବାବୁ ନାହାନ୍ତି । ସେ ଏଇ ବର୍ଷ ଆମକୁ ଛାଡ଼ି ଚାଲିଯାଇଛନ୍ତି ଓ ଗତ ଦୁଇ ତାରିଖ ସକାଳେ ଜଗଦୀଶ ବାବୁ ଚାଲିଗଲେ ।

ସାହିତ୍ୟିକ ନିଜେ ନହୋଇ, ସାହିତ୍ୟ ପ୍ରତି ଏକ ଅକୁଣ୍ଠ ଆଦର କେବଳ ଜଗଦୀଶ ବାବୁଙ୍କଠାରେ ଦେଖାଯାଏ । ସେଇଥିପାଇଁ ସମାବେଶ ପତ୍ରିକା । ୧୯୯୧ ମସିହା 'ସମାବେଶ' ପୂଜା ସଂଖ୍ୟା 'ଶେଷ କଥା'ରେ ସେ ସ୍ୱର୍ଗତ କାଳନ୍ଦୀଚରଣ ପାଣିଗ୍ରାହୀ, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ରବି ପଟ୍ଟନାୟକ, ସୁଧାଂଶୁ ମୋହନ ରାଉତରାୟ, ବୀରେନ୍ଦ୍ର ମହାନ୍ତି ପ୍ରଭୃତିଙ୍କ ବିୟୋଗରେ ଶ୍ରଦ୍ଧାସୁମନ ଅର୍ପଣ କରି ଲେଖିଥିଲେ, "ଆମ ଉତ୍ତର ପୁରୁଷଙ୍କୁ ସେହି ଶୂନ୍ୟସ୍ଥାନ ପୂରଣ କରିବାକୁ ପଡ଼ିବ । ଏହା ଏକ ପବିତ୍ର ଦାୟିତ୍ୱ । ଅନ୍ୟଥା ଓଡ଼ିଆ ସାହିତ୍ୟର ଚକ ପଛକୁ

ଫେରିଯିବା କିଛି ବଡକଥା ନୁହେଁ । ଏଥିପାଇଁ ଆବଶ୍ୟକ ପୂର୍ବସୂରୀଙ୍କ ଭଳି ଏକନିଷ୍ଠ ସାଧନା । ସେମାନେ ତ ଆଉ ଆସି ଆମ ପାଇଁ ଲେଖିବେ ନାହିଁ । ଆମକୁ ସେହିଭଳି ସାଧନା ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିବ ।"

ଜଗଦୀଶ ବାବୁଙ୍କର ଏଇ ଶେଷ କଥା ପଦକ କେତେ ସତ୍ୟ । ତାଙ୍କର ଅଭାବ କ୍ଷେତ୍ର ପ୍ରସ୍ତୁତିର ଅଭାବ ବୋଲି ଭାବିବାକୁ ହେବ । ନିରାଶା ମଧ୍ୟରେ ଆଶାର ସଞ୍ଚାର ସୃଷ୍ଟି କରି ପାରୁଥିବା ଜଗଦୀଶ ବାବୁଙ୍କର ଅବର୍ତ୍ତମାନରେ ଆମକୁ ସେହି ଆଶାର ଆଲୋକ ଜଳାଇ ରଖିବାକୁ ହେବ । ତା' ନହେଲେ ସାହିତ୍ୟ ବଞ୍ଚି ପାରିବ ନାହିଁ । ପତ୍ରିକା ପ୍ରକାଶିତ ହୋଇପାରିବ ନାହିଁ ।

'ସମାବେଶ' ସାହିତ୍ୟିକ ସମାଗମର ପୀଠ ହୋଇ ଯେଉଁ ସାରସ୍ୱତ କାର୍ଯ୍ୟ ସମ୍ପନ୍ନ କରୁଥିଲା, ସେହି କାର୍ଯ୍ୟକୁ ଆଗେଇ ନେବାକୁ ଆଗଭର ହେବା ଆଜର କର୍ତ୍ତବ୍ୟ ଏବଂ ସେହି କର୍ତ୍ତବ୍ୟ ସମ୍ପାଦନ ହିଁ ଜଗଦୀଶ ବାବୁଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

# ସାହିତ୍ୟରେ ରାଜନୈତିକ ନେତା

କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହେଉଥିବା 'ଇଣ୍ଡିଆନ୍ ଲିଟରେଚର୍' ପତ୍ରିକାର ଏକ ପୁରୁଣା ସଂଖ୍ୟାର ପୃଷ୍ଠା ଲେଉଟାଇବାବେଳେ ପଣ୍ଡିତ ନେହରୁଙ୍କର କେତେଗୁଡ଼ିଏ ଫଟୋଚିତ୍ର ପ୍ରକାଶ ପାଇଥିବାର ଦେଖିବାର ସୌଭାଗ୍ୟ ମିଳିଲା । ପଣ୍ଡିତ ନେହରୁ ୧୯୫୪-୬୪ ସାହିତ୍ୟ ଏକାଡେମୀର ସଭାପତି ଥିଲେ । ତାଙ୍କ ପରେ ଡକ୍ଟର ରାଧାକ୍ରିଷ୍ଣନ୍ ୧୯୬୪-୬୭ ସଭାପତି ହୋଇଥିଲେ । ଓଡ଼ିଶାରେ ପଣ୍ଡିତ ନୀଳକଣ୍ଠ ଦାସ ଓ ଡ଼ଃ ମହତାବ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ରହିଥିଲେ । ରାଜନୈତିକ ବ୍ୟକ୍ତିବିଶେଷ ଅନେକ ସମୟରେ ସାହିତ୍ୟ ଏକାଡେମୀର ସଭାପତି ଆସନ ଅଳଂକୃତ କରିବାର ଅନେକ ଦୃଷ୍ଟାନ୍ତ ରହିଛି । କିଏ କିଏ ରାଜନୈତିକ ନେତା, ମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ସାହିତ୍ୟ ଏକାଡେମୀର ସଭାପତି ହୋଇଛନ୍ତି, ତା'ର ଏକ ତାଲିକା ପ୍ରସ୍ତୁତ କରିବା ଏ ଲେଖାର ଉଦ୍ଦେଶ୍ୟ ନୁହେଁ । ଯେଉଁମାନେ ରାଜନୀତି ଓ ସମାଜସେବାକୁ ଜୀବନର ପେଶା ଭାବରେ ଗ୍ରହଣ କରିଥିଲେ, ସେମାନେ ସାହିତ୍ୟକୁ ବେଉସା ରୂପେ ମଧ୍ୟ ବାଛି ନେଇଥିଲେ । ସାହିତ୍ୟ ସମାଜ ସହିତ ସଂପୂର୍ଣ୍ଣ ଭାବେ ଯୁକ୍ତ ହୋଇଥିବା କାରଣରୁ ନିଜକୁ ପୂର୍ଣ୍ଣ ଭାବେ ପରିପ୍ରକାଶ କରିବା ଓ ନିଜର ମତକୁ ଉପସ୍ଥାପିତ କରିବା ପାଇଁ ସାହିତ୍ୟ ପ୍ରତି ସେମାନେ ଆଗ୍ରହ ପ୍ରକାଶ କରୁଥିଲେ । ସ୍ୱାଧୀନତା ସମୟରେ ଓ ତା'ର କିଛି ବର୍ଷ ପରେ ଆମେ ଏହିପରି କେତେ ବ୍ୟକ୍ତିବିଶେଷଙ୍କୁ ଦେଖୁ, ଯେଉଁମାନେ ସାହିତ୍ୟ, ରାଜନୀତି, ସମାଜ-ସେବା ଇତ୍ୟାଦି ଯାବତୀୟ କାର୍ଯ୍ୟ ସହିତ ଜଡ଼ିତ ଥିଲେ । ଏହା ସମୟକ୍ରମେ ହ୍ରାସ ପାଉଥିବାର ଲକ୍ଷ୍ୟ କରାଯାଉଛି ।

ରାଜନୀତିରେ ଯୋଗ ଦେଉଥିବା ବ୍ୟକ୍ତିବିଶେଷ ସାହିତ୍ୟ କରୁନାହାନ୍ତି ଏବଂ ଏପରିକି ସାହିତ୍ୟ ପ୍ରତି ଆଦୌ ଅନୁରାଗ ନାହିଁ । ମୁଷ୍ଟିମେୟ କେତେଜଣ ରାଜନୈତିକ ନେତା ସୃଷ୍ଟିଶୀଳ କାର୍ଯ୍ୟରେ ଲିପ୍ତରହି ରାଜନୀତିକୁ ନିଜର ପେଶା ଭାବରେ ଗ୍ରହଣ କରିଛନ୍ତି । ତେଣୁ ବର୍ତ୍ତମାନ ଯେଉଁମାନେ ସାହିତ୍ୟ କରୁଛନ୍ତି, ସେମାନେ ସାଧାରଣତଃ ଅଧ୍ୟାପକ, ପ୍ରଶାସନିକ କର୍ମଚାରୀ ଇତ୍ୟାଦି ଅର୍ଥାତ୍ ସରକାରୀ କର୍ମଚାରୀ । ସରକାରୀ କର୍ମଚାରୀ ହୋଇଥିବା କାରଣରୁ ମାନସିକ ସ୍ତରରେ ସେମାନଙ୍କର ଚିନ୍ତା ନିର୍ଦ୍ଦିଷ୍ଟ ଭାବେ ସୀମିତ ଏବଂ ସମଗ୍ର ଜନମାନସର ସମଷ୍ଟିଗତ ଭାବନାକୁ ଏକୀଭୂତ କରି ବ୍ୟକ୍ତି ଚେତନା ଭିତରେ ପ୍ରକାଶ କରିବା ସେମାନଙ୍କ ପକ୍ଷେ ସମ୍ଭବ ନୁହେଁ ।

ଏକାଡେମୀ ମଧ୍ୟ ଏହି ବ୍ୟାଧିରେ ଆକ୍ରାନ୍ତ । ପ୍ରଶାସନିକ ଅଭିଜ୍ଞତା ଶାସନ କରିବା ପାଇଁ ଆବଶ୍ୟକ ହୋଇପାରେ, କିନ୍ତୁ ସାହିତ୍ୟ ପାଇଁ ବ୍ୟାପକ କ୍ଷେତ୍ର ପ୍ରସ୍ତୁତ କରି, ସେଥିରେ ନୂତନ ସୃଷ୍ଟି ଚେତନାକୁ ଜନ୍ମଦେବା କଷ୍ଟସାଧ୍ୟ ବ୍ୟାପାର । ଏହି କାରଣରୁ ଏକାଡେମୀର ସଭାପତି ପଦ ଅଳଂକୃତ କରିବାବେଳେ ରାଜନୈତିକ ନେତୃତ୍ୱର ସାମନା ସାମନି ହେବା କଷ୍ଟସାଧ୍ୟ ହୋଇପଡ଼େ । ପ୍ରଶାସନିକ ଅଧିକାରୀ ବା ସରକାରୀ କର୍ମଚାରୀମାନଙ୍କର ମାନସିକ ସଂକୋଚନ ତାଙ୍କୁ ଅନ୍ୟ କୌଣସି ଅବସ୍ଥାରେ ସେହି ସଂକୋଚନ ଭୂମିରୁ ସଂପ୍ରସାରିତ ଭୂମିକୁ ନେଇଯିବାରେ ଆଦୌ ସହାୟକ ହୋଇପାରେନା । ପଣ୍ଡିତ ନେହରୁ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ଥିବାବେଳେ କହିଥିଲେ, "As president of the Akademi, I may tell you quite frankly I would not like the Prime Minister to interfere with my work ।" ଏଣୁ ଆମେ ଏକାଡେମୀର ସ୍ୱାତନ୍ତ୍ର୍ୟ ବା ସ୍ୱାଧୀନତା କଥା କହିବାବେଳେ ଆମର ମାନସିକ ନ୍ୟୂନତା ଠାରୁ ଊର୍ଦ୍ଧ୍ୱକୁ ଯିବାର ଆବଶ୍ୟକତା ରହିଛି । ଏହା ସେତିକିବେଳେ ସମ୍ଭବ, ଯେତେବେଳେ ରାଜନୀତି, ସମାଜସେବାରେ ବ୍ରତୀ ହୋଇ ସାହିତ୍ୟ ପ୍ରତି ଏକନିଷ୍ଠ ମନୋଭାବ ପୋଷଣ କରୁଥିବା ବ୍ୟକ୍ତି ଏକାଡେମୀର ନେତୃତ୍ୱ ନେବେ ।

ଓଡ଼ିଶାରେ ରାଜନୈତିକ ବ୍ୟକ୍ତିମାନଙ୍କ ମଧ୍ୟରେ ସାହିତ୍ୟ ପ୍ରତି ଆଗ୍ରହ ଖୁବ୍ କମ୍ । ସେମାନଙ୍କ ମଧ୍ୟରେ ସୃଷ୍ଟିଶୀଳ ସ୍ରଷ୍ଟା ନ ଥିବାବେଳେ ସାହିତ୍ୟ ପ୍ରତି ସଦିଚ୍ଛା, ଅନୁରାଗ ଓ ପ୍ରୀତି ନଥିବା ବେଶ୍ ପରିଲକ୍ଷିତ । ଅପରପକ୍ଷରେ ସାହିତ୍ୟ କରୁଥିବା ସ୍ରଷ୍ଟାମାନେ ମାନସିକ ସ୍ତରରେ ସଂକୁଚିତ; କାରଣ ସେମାନେ ପ୍ରତ୍ୟକ୍ଷ ଭାବେ ରାଜନୀତି, ସମାଜସେବା ବା ଜନଗଣଙ୍କର ସମସ୍ୟା ସହିତ ଜଡ଼ିତ ନୁହନ୍ତି । ଏପରି ଏକ ସ୍ଥିତିରେ ରାଜ୍ୟରେ ସାଂସ୍କୃତିକ ଓ ବୌଦ୍ଧିକ ଦାରିଦ୍ର୍ୟ ବୃଦ୍ଧି ପାଇବାର ସମ୍ଭାବନାକୁ ଆମେ ଅସ୍ୱୀକାର କରିପାରିବା କି ? ଏ ସଂପର୍କରେ ବିଶେଷ ଆଲୋଚନା କରିବା ଆଜିର ଆବଶ୍ୟକତା ନୁହେଁ କି ?



# ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

ଓଡ଼ିଶାର ଆଉ ଜଣେ କୃତବିଦ୍ୟ ବିଦ୍ୱାନ ବ୍ୟକ୍ତିଙ୍କର ଇହଲୀଳା ସମ୍ବରଣ ହେଲା । ପ୍ରଫେସର ଡ଼କ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କର ବିୟୋଗ ବାର୍ତ୍ତା ଶୁଣି ମନଟା କେମିତି ହୋଇଗଲା । ସେ ଥିଲେ ମୋର ପ୍ରଫେସର । ୧୯୬୦-୬୨ ମସିହା ସମୟରେ ବାଣୀବିହାର ରାଜନୀତି ବିଜ୍ଞାନର ଛାତ୍ର ଥିବାବେଳେ ତାଙ୍କ ପାଠପଢ଼ା ଶୈଳୀ ଓ ଛାତ୍ର ବତ୍ସଳତା ମୋତେ ମୁଗ୍‌ଧ କରିଥିଲା । ଅନେକେ ଥିଲେ ତାଙ୍କର ପ୍ରଶଂସକ ଓ ଅନେକେ ନିନ୍ଦୁକ ମଧ୍ୟ । ତାଙ୍କ ଦ୍ୱାରା ଗଠିତ ରାଜନୀତି ବିଜ୍ଞାନର ଉପାଧିତ୍ତୋର ଶ୍ରେଣୀରେ ଓଡ଼ିଶାର ଅଧିକାଂଶ କଲେଜରେ ଛାତ୍ର ନେତାମାନଙ୍କର ଯୋଗଦାନ ସର୍ବବାଦୀ ଗ୍ରହଣୀୟ ହୋଇଥିଲା । ଗ୍ୟାଲେରୀରେ କ୍ଲାସ୍ ନେବାବେଳେ ରାଜନୀତିରୁ ରାଜନୀତି ବିଜ୍ଞାନର ନିଗୂଢ଼ ତତ୍ତ୍ୱମାନଙ୍କୁ ଅତ୍ୟନ୍ତ ସରଳ ଓ ସାବଲୀଳ ଢ଼ଙ୍ଗରେ ପ୍ରକାଶ କରିବାର ଅଦ୍ଭୁତ ଦକ୍ଷତାର ଅଧିକାରୀ ଥିଲେ ପ୍ରଫେସର ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ।

ଏହି ନାମଟି ଏତେ ପରିଚିତ ହୋଇଯାଇଥିଲା ଯେ, ଯେ କୌଣସି ସଭା-ସମିତିରେ ତାଙ୍କର ଯୋଗଦାନ ଶୁଣିବା ମାତ୍ରେ ହଲ୍‌ପରି ପୁରି ଯାଉଥିଲା । ଯଦି ଓଡ଼ିଆରେ ଭାଷଣ ଦେବେ, ତେବେ ଅତ୍ୟନ୍ତ ଭାବେ ଓଡ଼ିଆ । ଗୋଟିଏ ହେଲେ ଇଂରାଜୀ ଶବ୍ଦ ମୁହଁରୁ ବାହାରିବ ନାହିଁ ଏବଂ ଭାଷଣ ଦେବାବେଳେ ନିଜର ଚିନ୍ତାଧାରାକୁ ପରିଷ୍କାର ଭାବେ ପ୍ରକାଶ କରିବାକୁ ଆଦୌ କୁଣ୍ଠାବୋଧ କରନ୍ତି ନାହିଁ । ଅତ୍ୟନ୍ତ ମାର୍ଜିତ ଶବ୍ଦମାନଙ୍କର ପ୍ରୟୋଗ ସହିତ ବ୍ୟଙ୍ଗୋକ୍ତି କରିବାର ଦକ୍ଷତା ଏବଂ ନିଜର ସୁଚିନ୍ତିତ ମତାମତଦେଇ ଇତିହାସର ବିଭିନ୍ନ ଘଟଣାବଳୀରୁ ଉଦ୍ଧାରକରି ଯେପରି ଶ୍ରୋତାମାନଙ୍କୁ ମୁଗ୍‌ଧ କରନ୍ତି, ତାହା ବର୍ଣ୍ଣନା କରିବା ଅସମ୍ଭବ ।

ବିଭିନ୍ନ ସାହିତ୍ୟ, ସଂସ୍କୃତି ଓ ସାମାଜିକ ଅନୁଷ୍ଠାନମାନଙ୍କ ସହିତ ଜଡ଼ିତ ପ୍ରଫେସର ଦାଶ ଓଡ଼ିଆ ଜାତିର ଗର୍ବ ଓ ଗୌରବର ପ୍ରତୀକ । ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧା ତାଙ୍କୁ ପ୍ରଜାତନ୍ତ୍ର ପରିସରରେ ହେଉଥିବା ବିଷୁବ ମିଳନରେ ଦେଖିବାରେ ମିଳେ । ଉତ୍କଳ ସାହିତ୍ୟ ସମାଜ ନିର୍ବାଚନରେ ସେ ହୁଏତ ପ୍ରତିଦ୍ୱନ୍ଦ୍ୱିତାକରି ବିଜୟଶ୍ରୀ ମଣ୍ଡିତହୋଇ ପାରିନାହାନ୍ତି, କିନ୍ତୁ ତାଙ୍କୁ ହରାଇବାର ଗୌରବରେ ପ୍ରତିଦ୍ୱନ୍ଦ୍ୱୀ ନିଶ୍ଚିତ ଭାବେ ଉଲ୍ଲସିତ ହୋଇପାରି ନଥିବେ ।

ବାଣୀବିହାର କ୍ୟାମ୍ପସରେ ପ୍ରଫେସର୍ ଥିବାବେଳେ ସେ ଥିଲେ ନିର୍ଭୟରେ ଗର୍ଜୁଥିବା ସିଂହ । ଏପରିକି ତାଙ୍କୁ କ୍ୟାମ୍ପସରୁ ଦୂର କରିବା ପାଇଁ ପ୍ରଫେସର୍‌ରୁ ବହିଷ୍କାର କରାଯାଇଥିଲେ ମଧ୍ୟ ତାଙ୍କ ଗୁଣର ପୂଜାରୀ ଥିଲେ ଅନେକେ । ସେ ତାଙ୍କର ଆତ୍ମଜୀବନୀ ପୁସ୍ତକରେ ଅନେକ କଥା ଅବତାରଣା କରିଛନ୍ତି । ଅନେକଙ୍କ ସଂପର୍କରେ ନିଜର ମତ ମଧ୍ୟ ବ୍ୟକ୍ତ କରିଛନ୍ତି । ସେହି ଆତ୍ମଜୀବନୀ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସଂପଦ ଏଥିରେ କୌଣସି ସନ୍ଦେହ ନାହିଁ ।

ଓଡ଼ିଶାର ବୁଦ୍ଧିଜୀବୀ ମହଲରେ, ରାଜନୈତିକ ନେତୃବୃନ୍ଦଙ୍କ ନିକଟରେ ତାଙ୍କ ପ୍ରତି ଥିବା ଗଭୀର ସମ୍ମାନ ଅନ୍ୟ କେହି ପ୍ରଫେସରଙ୍କ ପ୍ରତି ଥିବାର ଦେଖାଯାଏ ନାହିଁ । ଅନେକ ତାଙ୍କର ଗୁଣ । ଗୁଣବତ୍ସଳ ଡକ୍ଟର ଦାଶଙ୍କର ଜୀବନ ଓଡ଼ିଶା ଶିକ୍ଷାଜଗତର ଏକ ଉଜ୍ଜ୍ୱଳ ଅଧ୍ୟାୟ ।

ସମୟ ଗଡ଼ି ଚାଲିଛି । ସେହି ତାଲରେ ଜଣେ ଜଣେ କୃତୀ ସନ୍ତାନଙ୍କୁ ଏ ମାଟି ହରାଇ ଚାଲିଛି । ସେମାନଙ୍କର ସ୍ଥାନ ପୂରଣ ହେବା କଷ୍ଟ ସାଧ୍ୟ । ଝାଡଗଦାରେ ପଦ୍ମ ପ୍ରସ୍ଫୁଟିତ ହେବାପରି ଦାରିଦ୍ର୍ୟ ଜୀବନ ଭିତରେ ସେହି ଜୀବନ ଅଙ୍କୁରିତ ଓ ପଲ୍ଲବିତ ହୋଇ ଜଣେ ଶ୍ରେଷ୍ଠ ସନ୍ତାନ ଭାବେ ନିଜକୁ ପ୍ରତିଷ୍ଠା କରି ଏ ଜାତିର ସେବାକରି ଯେଉଁ ମହାନ୍ ଗୌରବମୟ ପରମ୍ପରା ଛାଡ଼ିଗଲେ, ତାହାକୁ ଆଧାର କରି ଆଗଭର ହେବା ନୂତନ ପିଢ଼ିର ବର୍ତ୍ତମାନ କର୍ତ୍ତବ୍ୟ । ମଣିଷ ମରିପାରେ କିନ୍ତୁ ଆଦର୍ଶବୋଧ ଜାଜ୍ୱଲ୍ୟମାନ । ଆଦର୍ଶ ଓ ନୈତିକତା ହିଁ ସମାଜ ବ୍ୟବସ୍ଥାକୁ ଧରି ରଖିପାରେ, ପ୍ରଗତି କରାଇବାରେ ସାହାଯ୍ୟକାରୀ ଭୂମିକା ନିଏ ।

ପ୍ରଫେସର ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ ପରି ଆଦର୍ଶ ବ୍ୟକ୍ତିହିଁ ଓଡ଼ିଆ ଜାତିକୁ ଦିଗ ନିର୍ଦ୍ଦେଶ ଦେବ ଏବଂ ଗୁଣବତ୍ସଳ ଶିକ୍ଷକର ଭୂମିକାରେ ନୂତନ ପିଢ଼ି ଶିକ୍ଷକମାନଙ୍କୁ ଉଦ୍‌ବୁଦ୍ଧ କରିବ ଏହା ହିଁ ଆଜିର ଅନୁଚିନ୍ତା ।

# ଆତ୍ମଜୀବନୀ

ଓଡ଼ିଆ ସାହିତ୍ୟରେ ଜୀବନୀ ବା ଆତ୍ମଜୀବନୀ ପୁସ୍ତକର ବହୁଳତା ପ୍ରାୟ ନାହିଁ । ଯେଉଁ କେତେକ ପୁସ୍ତକ ଏ ସଂପର୍କରେ ଦେଖିବାକୁ ମିଳେ, ତା ଉପରେ ବହୁଳ ଆଲୋଚନା ହେବା କଦାଚିତ ଘଟିଥାଏ । ପୁସ୍ତକଟିଏ ପ୍ରକାଶ ପାଇବା ପରେ, ତାକୁ ଉନ୍ମୋଚନ କରିବା ଓ ତା'ର ଖବରକାଗଜରେ ଏକ ମୂଲ୍ୟାୟନ କରିବା ମଧ୍ୟରେ ସୀମିତ ରହେ । କେହି କେହି ସାହିତ୍ୟିକଙ୍କର ପୁସ୍ତକ ବହୁ ଆଲୋଚିତ ଓ ବହୁଚର୍ଚ୍ଚିତ ହେବାବେଳେ ଅନ୍ୟ କାହାରି ଆଦୌ ଆଲୋଚିତ ହୋଇ ନଥାଏ । କିନ୍ତୁ ଯେତେବେଳେ ଜୀବନୀ ବା ଆତ୍ମଜୀବନୀ କଥା ବିଚାର କରାଯାଉଛି, ସେତେବେଳେ ଏହାର ପୁଙ୍ଖାନୁପୁଙ୍ଖ ଆଲୋଚନା, ସମାଲୋଚନା ଓ ବିତର୍କର ଆବଶ୍ୟକତା ରହିଛି । ସମାଜରେ ଜଣେ ଜଣେ ପ୍ରତିଷ୍ଠିତ ଲେଖକ, ରାଜନୀତିଜ୍ଞ, ସମାଜସେବୀ ବା ଶିକ୍ଷାବିତ୍ ନିଜର ଆତ୍ମଜୀବନୀ ଲେଖିଥାନ୍ତି କିମ୍ବା ପରବର୍ତ୍ତୀ ସମୟରେ ସେମାନଙ୍କ ଉପରେ ଜୀବନୀ ଲେଖାଯାଏ । ଯଦି ଏହାର ଗୋଟିଏ ତାଲିକା ପ୍ରସ୍ତୁତ କରିବା, ତେବେ ତାଲିକାଟି ବେଶି ଦୀର୍ଘ ହେବନାହିଁ ଏବଂ ଏହି ପୁସ୍ତକମାନଙ୍କ ଉପରେ ଆଲୋଚନା ବା ବିତର୍କର ସଂପୂର୍ଣ୍ଣ ଅଭାବ ରହିଛି । ଏବେ ମିଃ ଭେଙ୍କଟରମଣଙ୍କର ରାଷ୍ଟ୍ରପତି ଥିବା ସମୟର ଅନୁଭବ ଓ ଅନୁଭୂତିକୁ ନେଇ ଏକ ପୁସ୍ତକ ସେ ନିଜେ ଲେଖି ପ୍ରକାଶ କରିଛନ୍ତି । ଏହି ପୁସ୍ତକର ଆଙ୍ଗିକ, ଆତ୍ମିକ ଓ ମୌଳିକତା ପ୍ରତି ଆଲୋଚନା କରାନଯାଇ କେଉଁ ବ୍ୟକ୍ତି ବା ଦଳ କେତେ ମାତ୍ରାରେ ଆଛନ୍ନ ତାକୁ ନେଇ ଗଣ୍ଡଗୋଳ ଆରମ୍ଭ ହୋଇଛି । ଜୀବନୀକୁ ଅଧ୍ୟୟନ କରି, ତାକୁ ଆଲୋଚନା ଓ ସମାଲୋଚନା ପରିସର ମଧ୍ୟକୁ ଆଣିବାର ଆବଶ୍ୟକତା ରହିଛି । ଏହି ଆବଶ୍ୟକତାକୁ ପୂରଣ କରିବାକୁ ହେଲେ ଜୀବନୀ-ଗୁଡ଼ିକର ବ୍ୟାପକ ଅଧ୍ୟୟନ କରି, ସେଗୁଡ଼ିକର ବିଭିନ୍ନ ଦିଗ ପ୍ରତି ଦୃଷ୍ଟି ପକାଇବାକୁ ହେବ । ଗତ କିଛି ଦିନ ତଳେ ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମାସ୍ କମ୍ୟୁନିକେସନର ଇଣ୍ଟରଭ୍ୟୁରେ ପ୍ରାର୍ଥୀମାନଙ୍କୁ ଗୋଟିଏ ପ୍ରଶ୍ନ ପଚରା ଯାଇଥିଲା । ଯେ ପ୍ରଶ୍ନଟି ହେଉଛି—ନବକୃଷ୍ଣ ଚୌଧୁରୀ କିଏ ? ଏହାର ଉତ୍ତର କେତେଜଣ ଦେଇଥିବେ ତା'ର କୌଣସି ଉତ୍ତର ଆମ ପାଖରେ ନାହିଁ । କିନ୍ତୁ ନବକୃଷ୍ଣ ଚୌଧୁରୀଙ୍କର ଏକ ଜୀବନୀ ଯାହାକୁ ବିଶିଷ୍ଟ ସାହିତ୍ୟିକ ଚିତ୍ତରଂଜନ ଦାସ ଲେଖିଛନ୍ତି, ତାକୁ ଦେଖିବାର ଓ ପଢ଼ିବାର ସୌଭାଗ୍ୟ ମିଳିଛି । ବେଶି ଜୀବନୀ ପୁସ୍ତକ ନ ମିଳିବାର କାରଣ ହୁଏତ ଲେଖିବା ପାଇଁ ଇଚ୍ଛାର ଅଭାବ, ଉପାଦାନର ଅଭାବ । ଚିତ୍ତବାବୁ ନବକୃଷ୍ଣ ଚୌଧୁରୀଙ୍କ

ଉପରେ ଲେଖିବା ପାଇଁ ଆରମ୍ଭ କରିବାକୁ ଯିବା ପୂର୍ବରୁ ବନ୍ଧୁମାନଙ୍କୁ ଓ ନବବାବୁଙ୍କୁ ଜାଣିଥିବା ଲୋକମାନଙ୍କୁ ପତ୍ର ଲେଖିଥିଲେ । ତା'ର ଅନୁଭୂତ ସଂପର୍କରେ ଚନ୍ଦ୍ରବାବୁ ଲେଖିଛନ୍ତି—"ଶ୍ରୀ ଚୌଧୁରୀଙ୍କର ଅନ୍ୟ ସ୍ୱଜନମାନେ ମଧ୍ୟ ଅନୁରୂପ ଭାବେ ନାହିଁ କରିଦେଲେ । ସର୍ବୋଦୟ ଆନ୍ଦୋଳନରେ ବହୁଦିନରୁ ରହି ଆସିଥିବା କେତେକ ବ୍ୟକ୍ତି ମଧ୍ୟ କୌଣସି ନା କୌଣସି କାରଣ ଦେଖାଇ ମୋ' ଅନୁରୋଧକୁ ଟାଳି-ଦେଲେ ।" ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସଂପର୍କିତ ବ୍ୟକ୍ତି ବିଶେଷ ତଥ୍ୟ ପ୍ରଦାନ ନ କରିବା ହେତୁ ଜୀବନୀ ଲେଖିବା ପାଇଁ ଉପାଦାନ ସଂଗ୍ରହ କରିବା ନିଶ୍ଚିତ ଭାବେ କଷ୍ଟସାଧ୍ୟ । କାରଣ ବ୍ୟକ୍ତିଗତ ଚିଠି, ଡାଏରୀ, ଫଟୋ, ଇତ୍ୟାଦି ବହୁ କମ୍ ଲୋକଙ୍କ ପାଖରେ ଥାଏ । ଓଡ଼ିଶାରେ ଡାଏରୀ ଲେଖିବାର ଅଭ୍ୟାସ ମଧ୍ୟ ସୀମିତ ।

ଜୀବନୀ ବା ଆତ୍ମଜୀବନୀରେ କେତେ ସତ ବା କେତେ ମିଛ, ତାହା ବିଶେଷ ଆଲୋଚନା କଲେ ଜଣାଯାଇପାରେ କିନ୍ତୁ ଜୀବନୀ ବା ଆତ୍ମଜୀବନୀ ଲେଖିବା ପାଇଁ ଯେଉଁ ଅକଥନୀୟ ଅଭାବ ଦେଇ ଯିବାକୁ ହୁଏ, ତାର ଫଳ ବୋଧହୁଏ ବହୁତ କମ୍ ଜୀବନୀ ବା ଆତ୍ମଜୀବନୀ ।

ଉତ୍କଳର ହରେକୃଷ୍ଣ ମହତାବ ତାଙ୍କର ଆତ୍ମଜୀବନୀ 'ସାଧନାର ପଥେ' ଲେଖିବା ବେଳେ ଶ୍ରୀ ନୀଳମଣି ରାଉତରାୟଙ୍କର 'ସ୍ମୃତି ଓ ଅନୁଭୂତି' ପ୍ରକାଶ ପାଇଛି । କିନ୍ତୁ ଓଡ଼ିଶାରେ ରାଜନୈତିକ ଜୀବନୀ ବା ଆତ୍ମଜୀବନୀ ବହୁ ସ୍ୱଳ୍ପ । ଏଠାରେ ରାଜନୈତିକ ବ୍ୟକ୍ତିମାନଙ୍କର ମୂଲ୍ୟାଙ୍କନ କରାଯାଏ ନାହିଁ । ଅବଶ୍ୟ ବେଶି କେହି ରାଜନୈତିକ ବ୍ୟକ୍ତିତ୍ୱ ରାଜନୀତି ଆକାଶରେ ଉଦ୍‌ଭାସିତ ହୋଇନାହାନ୍ତି । ଏ ଦୃଷ୍ଟିରୁ ଚନ୍ଦ୍ରବାବୁଙ୍କର ସ୍ୱପ୍ରଚେଷ୍ଟାରେ ସଂମ୍ପୃକ୍ତ ନବକୃଷ୍ଣ ଚୌଧୁରୀଙ୍କର ଜୀବନୀ ନିଶ୍ଚିତ ଭାବେ ଗୁରୁତ୍ୱ ବହନ କରେ ଓ ଅଧିକ ଆଲୋଚନା ଦାବି କରେ । ଜୀବନୀର ସତ୍ୟନିଷ୍ଠତା ଓ ତାର ସାହିତ୍ୟିକ ମୂଲ୍ୟାଙ୍କନ ହିଁ ଜୀବନୀ ପୁସ୍ତକଟିକୁ ପାଠକ ସହିତ ଆତ୍ମିକ ସଂପର୍କ ବୃଦ୍ଧି କରିବାରେ ସାହିତ୍ୟ ସାହାଯ୍ୟ କରିଥାଏ । ଏ ସଂପର୍କରେ ଅଧିକ ଆଲୋଚନା ଆଜିର ଆବଶ୍ୟକତା ନୁହେଁ କି ?



# ଓଡ଼ିଶା ସାହିତ୍ୟ ଏକାଡେମୀର କାମ

ଓଡ଼ିଶା ସାହିତ୍ୟ ଏକାଡେମୀକୁ ରାଜ୍ୟ ସରକାର ପୁନର୍ଗଠନ କରିଛନ୍ତି । ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଜିଲ୍ଲାମାନଙ୍କରୁ ପ୍ରତିଷ୍ଠିତ ସାହିତ୍ୟିକମାନଙ୍କୁ ଏହାର ସାଧାରଣ ପରିଷଦର ସଭ୍ୟଭୁକ୍ତ କରିଛନ୍ତି । ରାଜ୍ୟ ସରକାର ମନୋନୀତ କରିଥିବା କାରଣରୁ ଏମାନଙ୍କୁ ସରକାରୀ ସାହିତ୍ୟିକ ବୋଲି ବୁଝାଯିବା ଯଥାର୍ଥ ନୁହେଁ । ଏକାଡେମୀ ସରକାରଙ୍କ ଆର୍ଥିକ ଅନୁଦାନରେ ପରିଚାଳିତ ହେଉଥିବା ଯୋଗୁଁ ସରକାରଙ୍କ କର୍ତ୍ତୃତ୍ୱ ରହିବା ସ୍ୱାଭାବିକ୍ । କିନ୍ତୁ ଏହାର କାର୍ଯ୍ୟ ପରିସର କ'ଣ ହେବ, କି କି କାର୍ଯ୍ୟ ହାତକୁ ନେଇ ଏକାଡେମୀ ରାଜ୍ୟରେ ସାହିତ୍ୟ ଓ ସଂସ୍କୃତିର ବିକାଶ କରିବ, ତାହା ଏକାଡେମୀର ସଭାପତି ଓ ସଭ୍ୟମାନଙ୍କ ଉପରେ ନିର୍ଭର କରେ । ଏଥିପାଇଁ ସମ୍ବିଧାନରେ କୌଣସି ବାଧ ବାଧକତା ସଭାପତି ବା ସଭ୍ୟମାନଙ୍କ ଉପରେ ନାହିଁ । ଦୀର୍ଘ କେତେବର୍ଷ ଧରି ଏକାଡେମୀ କାର୍ଯ୍ୟ ପ୍ରଣାଳୀ ନେଇ ଅସନ୍ତୋଷ ସାହିତ୍ୟିକମାନଙ୍କ ମଧ୍ୟରେ ଦେଖାଦେଇଛି । ଏ ପ୍ରକାର ଅସନ୍ତୋଷକୁ ଯେ ସମ୍ପୂର୍ଣ୍ଣ ଦୂର କରିହେବ, ତାହା ଯଦି କେହି ଭାବୁଥାଏ, ତେବେ ତାଙ୍କର ଭାବନା ଯଥାର୍ଥ ନୁହେଁ ।

ତେବେ କେତେଗୁଡ଼ିଏ କ୍ଷେତ୍ରରେ ଅସନ୍ତୋଷକୁ କମାଇ ଦିଆଯାଇପାରିବ । ପୂର୍ବରୁ କିପରି ଭାବରେ ଏକାଡେମୀ, ସଂସ୍କୃତି ବିଭାଗ ଓ କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗ ମଧ୍ୟରେ ସମନ୍ୱୟ ସୃଷ୍ଟି ହୋଇପାରିବ, ସେ ସମ୍ପର୍କରେ ଏହି ସ୍ତମ୍ଭରେ ଉଲ୍ଲେଖ କରିଥିଲୁ । ଏକାଡେମୀକୁ ସଜୀବ ଓ ବଳିଷ୍ଠ ସଂଗଠନ ଭାବରେ ସାହିତ୍ୟ ଓ ସଂସ୍କୃତିର ଜାଗରଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେବା ପାଇଁ କେତେଗୁଡ଼ିଏ ପଦକ୍ଷେପ ନେବାର ଆବଶ୍ୟକତା ରହିଛି । ସେପରି ପଦକ୍ଷେପରୁ ପ୍ରଥମ ହେଉଛି ଏକାଡେମୀର ସଂସ୍କୃତି ଭବନ । ଶିଳାନ୍ୟାସ ଦିଆଯାଇଛି, କାର୍ଯ୍ୟକୁ ତ୍ୱରାନ୍ୱିତ କରି ଖୁବ୍ ଶୀଘ୍ର ନିଜ ଭବନକୁ ଯିବାର ରାସ୍ତାକୁ ପ୍ରଥମେ ସୁଗମ କରିବା ଦରକାର ।

ଯଦି ପ୍ରତ୍ୟେକ ମାସର ମାଗାଜିନ୍ ଦେଖିବେ, ତେବେ ଅନେକ ନୂତନ ଲେଖକ ଜନ୍ମ ନେଉଛନ୍ତି । ଯେଉଁମାନେ ଅତୀତରେ ଲେଖି ଯଶ ଅର୍ଜନ କରିଛନ୍ତି, ସେମାନେ ବୟସର ସିଡ଼ିରେ ଉପରକୁ ଚାଲିଗଲେଣି । ସଂଘର୍ଷର ପରିଧିକୁ ପାର ହେଲେଣି । ସେମାନଙ୍କ ନିକଟରେ ସଂଘର୍ଷ ନାହିଁ ; ତେଣୁ ଜୀବନ ମଧ୍ୟ ନାହିଁ ।

ଯେଉଁ ତରୁଣମାନେ ଜୀବନକୁ ନୂତନ ଭାବରେ ଦେଖିବାକୁ ଚେଷ୍ଟା କରୁଛନ୍ତି, ସେମାନେ ନିଶ୍ଚିତଭାବେ ପରୀକ୍ଷା ନିରୀକ୍ଷା କରୁଛନ୍ତି । ବହିଟିଏ ଛପାଇବାକୁ ପ୍ରକାଶକ-ମାନଙ୍କର ଦ୍ୱାରସ୍ଥ ହେଉଛନ୍ତି । କାଗଜ ଟଙ୍କା ଯୋଗାଡ଼ କରି ବହି ଛାପିବାକୁ ଦେଉଛନ୍ତି । ତଥାପି ମନରେ ଅନେକ ସାହସ ଅଛି, ଦମ୍ଭ ଅଛି, କଲମକୁ ଶକ୍ତ କରି ଜାବୋଡ଼ି ଧରିବାର ମନ ମଧ୍ୟ ଅଛି । ଜୀବନ ସଂଗ୍ରାମରେ ଯୁଝିବା ବେଳେ ଜୀବନକୁ ଦେଖିବାର, କଳ୍ପନା କରିବାର ଇଚ୍ଛା ରହିଛି । ସେମାନେ ଯେ ସମାଜକୁ ଏକ ନୂତନ ମୋଡ଼ ଦେଇପାରିବେ ଓ ସେମାନଙ୍କୁ ପ୍ରୋତ୍ସାହନ ଦେବାର ଆବଶ୍ୟକତା ରହିଛି, ତାହା ଏକାଡେମୀ ଭାବିବା ଉଚିତ । କାରଣ ଯେଉଁମାନଙ୍କ ମୁଣ୍ଡରେ ତେଲ ଜୁଡ଼ୁବୁଡ଼ୁ ହୋଇ ଜଟା ଧରିଲାଣି, ସେମାନଙ୍କୁ ବେଶୀ ତେଲ ଢାଳିବାର କୌଣସି ଯୁକ୍ତି ନାହିଁ । ଏହା କହିବାର ଅର୍ଥ ନୁହେଁ ଯେ ବରିଷ୍ଠମାନଙ୍କୁ, ପ୍ରତିଷ୍ଠିତମାନଙ୍କୁ ପରିହରିବାର ଆବଶ୍ୟକତା ନାହିଁ ବା ସମ୍ମାନ ଦେବା ନୁହେଁ । କିନ୍ତୁ ମନରେ ଗୋଟିଏ ପ୍ରଶ୍ନ ଆସୁଛି, କେବେ ବରିଷ୍ଠ, ପ୍ରତିଷ୍ଠିତ ସାହିତ୍ୟିକମାନେ ତରୁଣମାନଙ୍କୁ ଉତ୍ସାହ ଦେଇ କହିଲେଣି କି "ତୁମ ଲେଖା ଭଲ ହୋଇଛି, ବେଶୀ ଲେଖ ।" ଏହା ହେଉନ, ଯେଉଁଠି କେବେ ବା କେମିତି ହେଉଛି ସେଠାରେ କିଛି ମତଲବ ଥାଇପାରେ ବୋଲି ଅନୁଭବ କରାଯାଉଛି । କାହିଁ କିଏ ବରିଷ୍ଠ ସାହିତ୍ୟିକ, ତରୁଣ ଗାଳ୍ପିକର ବହିଟିକୁ ଆଗ୍ରହର ସହ ପଢ଼ି ରିଭ୍ୟୁ ଲେଖିଛି ବା ଜୋର୍‌ରେ କହିଛି । ଯେତେବେଳେ ତରୁଣ ଲେଖକଟି ଜୀବନ ଯନ୍ତ୍ରଣା ଭିତରେ ଛଟପଟ ହେଉଛି, ସେତେବେଳେ ତାକୁ ସାହାଯ୍ୟ କରିବାକୁ ଏକାଡେମୀ ଆଗେଇ ଆସିବା ଉଚିତ । ତରୁଣମାନଙ୍କୁ ସେମାନଙ୍କର ଭୂମିକା ସମ୍ପର୍କରେ ସଚେତନ କରାଇ ସେମାନଙ୍କ ସାହାଯ୍ୟ ଓ ସହଯୋଗରେ ଏକାଡେମୀକୁ ସଜୀବ କରାଯାଉ ।

ଏକାଡେମୀର ଅନ୍ୟ ଏକ ଉପସ୍ମାରକ କାର୍ଯ୍ୟ ପୁରସ୍କାର ଦେବା । ଧରାଧରି କଲେ ପୁରସ୍କାର ମିଳିଯାଉଛି । ଏ ଦୋଷରେ ଦୋଷୀ ଏକାଡେମୀ କିପରି କାର୍ଯ୍ୟ କଲେ ଦୋଷୀ ହେବାରୁ ମୁକ୍ତ ହେବ, ସେଥିପାଇଁ ବ୍ୟାପକ ଭାବରେ ବିମର୍ଶ କରାଯିବା ଦରକାର ।

ଆମ ରାଜ୍ୟର ସାହିତ୍ୟ ଅବସ୍ଥା କେଉଁପରି ଅବସ୍ଥାରେ ରହିଛି, ତାକୁ ଅନୁଧ୍ୟାନ କରିବାର ଆବଶ୍ୟକତା ବେଶୀ । ବହିଟିର ଏକ ହଜାର କପି ବିକ୍ରି ହେବାକୁ ଦଶବର୍ଷ ଲାଗୁଛି ; ଦ୍ୱିତୀୟ ସଂସ୍କରଣ ହେଉ ନାହିଁ ; ପତ୍ରିକାଟିଏ ଏକାଦିକ୍ରମେ ପ୍ରକାଶ ପାଇପାରୁ ନାହିଁ ଇତ୍ୟାଦି ଆମ ସାହିତ୍ୟ କେତେ ବେଶୀ ଜନ ଜୀବନକୁ ଅଛନ୍ନ କରିଛି, ତାହା ଜଣାଇଦେଉଛି । ପୁସ୍ତକ ପ୍ରକାଶନ, ପ୍ରଚାରଣର ଗୁରୁତ୍ୱପୂର୍ଣ୍ଣ

ଭୂମିକାରେ ଏକାଡେମୀ ଯଦି ଯୋଗଦଅନ୍ତା ଏବଂ ଓଡ଼ିଶାରେ ବ୍ୟାପକ କ୍ଷେତ୍ର ପ୍ରସ୍ତୁତ କରନ୍ତା, ତେବେ ତାହା ସାହିତ୍ୟର ବିକାଶରେ ସାହାଯ୍ୟକାରୀ ହୁଅନ୍ତା । ଅନେକ କାର୍ଯ୍ୟ କରିବାର ସମ୍ଭାବନା ରହିଛି । ଯଦି ମନ ଥିବ, ତେବେ ଉପାୟ ଆସିବ, ଅର୍ଥ ଆସିବ । ଏକାଡେମୀ ସଭ୍ୟମାନେ ଯଦି ନିଜେ କିପରି ଉପକୃତ ହେବେ, ସେହି କଥା ଭାବି କାର୍ଯ୍ୟ କରିବେ, ତେବେ ଯେତେ ବଡ଼ ଓ ବରିଷ୍ଠ ସାହିତ୍ୟିକମାନେ ରହିଲେ ମଧ୍ୟ ଏକାଡେମୀର ସ୍ଥାଣୁତ୍ୱ ଭାଙ୍ଗିବ ନାହିଁ । ଏ ବିଷୟରେ ସମସ୍ତେ ଭାବିବା ଆଜିର କର୍ତ୍ତବ୍ୟ ନୁହେଁ କି ?



# ସାହିତ୍ୟ ଏକାଡେମୀର ପୁନର୍ଗଠନ

ଓଡ଼ିଶା ସରକାର ଓଡ଼ିଶା ସାହିତ୍ୟ ଏକାଡେମୀକୁ ପୁନର୍ଗଠନ କରିଥିବାର ସମ୍ବାଦ ଶୁଣିବାକୁ ମିଳୁଛି । ଶ୍ରୀ କିଶୋରୀ ଚରଣ ଦାସଙ୍କୁ ସାହିତ୍ୟ ଏକାଡେମୀର ସଭାପତି ଆସନରେ ଅଳଂକୃତ କରାଯାଇଛି । ଏହା ନିଶ୍ଚିତ ଭାବେ ସ୍ୱାଗତଯୋଗ୍ୟ । କିଶୋରୀ ବାବୁଙ୍କ ପରି ଜଣେ ସୁନାମଧନ୍ୟ, ବରିଷ୍ଠ ଓ ବିଶିଷ୍ଟ ସାହିତ୍ୟିକଙ୍କୁ ଦାୟିତ୍ୱ ଦେଇ ସରକାର ଯେଉଁ ଦୂରଦର୍ଶିତାର ପରିଚୟ ଦେଇଛନ୍ତି, ତାହା କିଶୋରୀ ବାବୁ କିପରି ପାଳନ କରୁଛନ୍ତି, ତାହା ସମସ୍ତ ସାହିତ୍ୟିକ ଓ ସାହିତ୍ୟପ୍ରେମୀ ଜନସାଧାରଣ ଆଗ୍ରହ ଓ ଉତ୍କଣ୍ଠାର ସହ ଲକ୍ଷ୍ୟ କରିବେ । କିଶୋରୀ ବାବୁଙ୍କର ପ୍ରଶାସନିକ ଅଭିଜ୍ଞତା ରହିଛି । ତାକୁ କାର୍ଯ୍ୟରେ ଲଗାଇବା କଥା ।

ଏହି ଅବସରରେ ସଂସ୍କୃତି ସଚିବ ଭାବେ କବି ରାଜେନ୍ଦ୍ର କିଶୋର ପଣ୍ଡା ମଧ୍ୟ ଦାୟିତ୍ୱ ଗ୍ରହଣ କରିଛନ୍ତି । ଜଣେ ସଚ୍ଚୋଟ ଓ ଏକବାଗିଆ ଅଫିସର ଭାବରେ ଶ୍ରୀ ପଣ୍ଡାଙ୍କର ଯେତିକି ସୁନାମ ରହିଛି, କବି ଭାବରେ, ସଂଗଠକ ଭାବରେ ସେତିକି ଖ୍ୟାତି ଅଛି । ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନର ଥିବାବେଳେ କିଛି ସମୟ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ନେଇ ଯେପରି ଭାଷା ସାହିତ୍ୟ ପାଇଁ କାର୍ଯ୍ୟ କରିଥିଲେ, ତାହା ସମସ୍ତେ ଜାଣନ୍ତି । ରାଜ୍ୟପାଳଙ୍କ ସଚିବ ଭାବେ ପୂର୍ବାଞ୍ଚଳ ସାଂସ୍କୃତିକ ସମ୍ମିଳନୀଠାରୁ ଆରମ୍ଭକରି ରାଜ୍ୟପାଳଙ୍କ ପ୍ରଶସ୍ତି ଉପାସ୍ୟନ ବ୍ୟବସ୍ଥା ପ୍ରଚଳନ କରିବାରେ ତାଙ୍କର ଭୂମିକା ମୁଖ୍ୟ । ସଂସ୍କୃତି ସଚିବ ଭାବେ ଶ୍ରୀ ପଣ୍ଡାଙ୍କର ଯୋଗଦାନ ନିଶ୍ଚିତ ଭାବେ ଭାଷା ସାହିତ୍ୟର ଅଭିବୃଦ୍ଧିରେ ସହାୟକ ହେବ ।

କେନ୍ଦ୍ର ସଂସ୍କୃତି ବିଭାଗରେ କବି ସୀତାକାନ୍ତ ମହାପାତ୍ର ସଚିବ । କେନ୍ଦ୍ର ସରକାର ବିଭିନ୍ନ ରାଜ୍ୟକୁ ଅନୁଦାନ ଦେଉଛନ୍ତି । କେତେକ ବ୍ୟକ୍ତିବିଶେଷ ବିଭିନ୍ନ ସଂଗଠନ ନାମରେ ଏହି ଅନୁଦାନ ପାଇ ପାରୁଛନ୍ତି । ତେବେ ରାଜ୍ୟ ସରକାର ଓ ସାହିତ୍ୟ ଏକାଡେମୀ ଏପରି ଅନୁଦାନ ପାଇବାରେ ଅସୁବିଧା କେଉଁଠି ? କେବଳ ଇଚ୍ଛାଶକ୍ତିର ଆବଶ୍ୟକ । ଯଦି ପ୍ରତ୍ୟେକ ନିଜ ନିଜର ବଡ଼ପଣିଆ ଦେଖାଇବାକୁ ଚେଷ୍ଟା କରନ୍ତି, ନିଜର ଅହଂକୁ ଜାହିର କରନ୍ତି, ତେବେ ଏକାଡେମୀର ଆର୍ଥିକ ଅବସ୍ଥା ସୁଧୁରିବ ନାହିଁ ଏବଂ କୌଣସି ନୂତନ କାର୍ଯ୍ୟ ହୋଇପାରିବ ନାହିଁ । କିଶୋରୀ ବାବୁ, ରାଜେନ୍ଦ୍ର ବାବୁ ଓ ସୀତାକାନ୍ତ ବାବୁ ନିଜ ନିଜ କ୍ଷେତ୍ରରେ କିଏ ବଡ଼

ଏ ପ୍ରତିଯୋଗିତାରେ ନ ମାତି, ସବୁ ଏକ ମନ ପ୍ରାଣ ହୋଇ ଓଡ଼ିଶାର ଭାଷା ସାହିତ୍ୟ ସଂସ୍କୃତିର ଉନ୍ନତି ପାଇଁ ଲାଗନ୍ତି, ତେବେ ନେପାଳର ସଂସ୍କୃତ ଭବନ ପରି ଗୋଟେ ନୁହେଁ, ଅନେକଗୁଡ଼ିଏ ସଂସ୍କୃତି ଭବନ ସାରା ରାଜ୍ୟରେ ବିଛେଇ ହୋଇ ପଡ଼ିବ । ଅନେକ ବହି ପ୍ରକାଶିତ ହେବ, ଅନୁବାଦ ହେବ, ଅନେକ ନୂଆ ନୂଆ କଥା କରାଯାଇ ପାରିବ ।

ଏଥିପାଇଁ ଏ ତିନି ଜଣଙ୍କର ସମ୍ମିଳିତ ଚେଷ୍ଟା, ଉଦ୍ୟମ ଓ ଇଚ୍ଛାଶକ୍ତି ଆବଶ୍ୟକ । ବ୍ୟକ୍ତିଗତ ସ୍ତରରେ ବହୁଲୋକ ବଡ଼ହୋଇ ପାରନ୍ତି; ମାତ୍ର ସମଷ୍ଟିକୁ ଉଠାଇ ପାରିଲେ ସମଗ୍ର ରାଜ୍ୟ ଲାଭବାନ ହେବ, ଯଶପ୍ରାପ୍ତ ହେବ ।

ଆମ ରାଜ୍ୟ ପାଇଁ ଏକ ପ୍ରବାଦ ଅଛି, ଆମେ ପରସ୍ପରର ଗୋଡ଼ ଟଣାଟଣିରେ ବେଶୀ ଅଭ୍ୟସ୍ତ । ଯେ ଯେତେ ବଡ଼ ପଦପଦବୀରେ ରହିଥିଲେ ମଧ୍ୟ ଆମେ ଏହି ଦୋଷରେ ଦୋଷୀ ବୋଲି କୁହାଯାଏ । ଏହି ପ୍ରବାଦ ଅନ୍ତତଃପକ୍ଷେ ବର୍ତ୍ତମାନ ଭୁଲ୍ ବୋଲି ପ୍ରମାଣିତ ହେଉ-ଏବଂ ସାହିତ୍ୟ ଏକାଡେମୀ ଠାରୁ ଆରମ୍ଭ କରି ଓଡ଼ିଶାର ଭାଷା ସାହିତ୍ୟ କଳା ଓ ସଂସ୍କୃତିର ଦୁର୍ବାର ଅଭିଯାନ ଆରମ୍ଭ ହୋଇ ଭାରତରେ ଶୀର୍ଷ ସ୍ଥାନ ଅଧିକାର କରୁ ।

ଆମେ କଣୋଙ୍ଗ ବାବୁ, ରାଜେନ୍ଦ୍ର ବାବୁ ଓ ସୀତାକାନ୍ତ ବାବୁଙ୍କୁ ଅଭିନନ୍ଦନ ଜଣାଇ ଆଗାମୀ ଭବିଷ୍ୟତକୁ ଚାହିଁ ରହିଲୁ ।



# ଆମ ମାଟି ସହିତ ସମ୍ପର୍କ

ଗତ ଜୁନ୍ ମାସ ୨୯ ତାରିଖ ସନ୍ଧ୍ୟାରେ ରବୀନ୍ଦ୍ର ମଣ୍ଡପରେ ଏକ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହେଲା । ଏହି ସଭାରେ କେତେକ ବିଶିଷ୍ଟ ବୟସ୍କ ସାହିତ୍ୟିକମାନଙ୍କୁ ସମ୍ବର୍ଦ୍ଧନା କରାଗଲା ଓ ବିଶେଷ ସମ୍ବର୍ଦ୍ଧିତ ବ୍ୟକ୍ତି ଥିଲେ ଫତୁରାନନ୍ଦ । ମୁଖ୍ୟଅତିଥି ଭାବରେ ଯୋଗଦେଇ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ପ୍ରଫେସର୍ ୟୁ.ଆର. ଅନନ୍ତମୂର୍ତ୍ତି ସାହିତ୍ୟିକମାନେ ନିଜ ମାଟି ସହିତ ସମ୍ପର୍କ ରକ୍ଷାକରି ନିଜ ସୃଷ୍ଟିକୁ ସମୃଦ୍ଧ କରିବାକୁ ଆହ୍ୱାନ କଲେ । ଏ ପରିପ୍ରେକ୍ଷୀରେ ଭାଗବତ ଓଡ଼ିଆ ଜାତିର କେତେ ନିକଟତମ ଓ ତାହା କିପରି ଭାଷା ସାହିତ୍ୟକୁ ଅଭିବୃଦ୍ଧି କରିଛି, ତାହା ମଧ୍ୟ ବର୍ଣ୍ଣନା କଲେ । ଆମ ସାହିତ୍ୟ ସଂସ୍କୃତିରେ ଉପନିଷଦ, ଦର୍ଶନ ବିଭିନ୍ନ ଧର୍ମ ପୁସ୍ତକଠାରୁ କଥାସରିତ ସାଗର, ଲୋକଗଳ୍ପ, ଜାତକ ଗଳ୍ପ ଇତ୍ୟାଦିର ବହୁଳତା ସତ୍ତ୍ୱେ ଆମେ ସେହି ଅମୂଲ୍ୟ ସମ୍ପଦକୁ ଏ ପର୍ଯ୍ୟନ୍ତ ଆବିଷ୍କାର କରିପାରିନାହୁଁ । ଆମେ ତୁଳନାତ୍ମକ ଚିତ୍ର ଆଙ୍କିବା ବେଳେ କାଳିଦାସଙ୍କୁ ଭାରତର ସେକ୍ସପିୟର, ବାଲ୍ମିକୀଙ୍କୁ ପ୍ରାଚ୍ୟର ହୋମର ଇତ୍ୟାଦି କହୁଛୁ । ଏହାଦ୍ୱାରା ଆମ ସାହିତ୍ୟ ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ଏବଂ ସେମାନଙ୍କୁ ନେଇ ଆମ ନିଜକୁ ତୁଳନା କରୁଛୁ । ଆମ ମନକୁ ଆସୁନାହିଁ କିଏ ପାଶ୍ଚାତ୍ୟର କବୀର ବା ଇଂଲଣ୍ଡର ତୁକାରାମ ହେବେ ? କାହା ସହିତ କୋଣାର୍କ, ଅଜନ୍ତା, ଏଲୋରାକୁ ତୁଳନା କରାଯିବ ? କେଉଁ ମହାକାବ୍ୟ ରାମାୟଣ ଓ ମହାଭାରତର ସମାନ ଆସନରେ ବସିପାରିବ ? ଉପେନ୍ଦ୍ର ଭଞ୍ଜଙ୍କୁ କେଉଁ କବିଙ୍କ ସହିତ ତୁଳନା କରିପାରିବା ? ଆମେ ଏହା କେବେ କରିବାକୁ ଚେଷ୍ଟା କରିନାହୁଁ । ଆମେ ଆମ ପୂର୍ବସୂରୀଙ୍କୁ ନେଇ ଗର୍ବ କରିବା ପରିବର୍ତ୍ତେ ବିଦେଶୀ ଶକ୍ତିର ଦାସତ୍ୱକୁ ଆନନ୍ଦରେ ଗ୍ରହଣ କରି ଚାଲିଛୁ । ଏହି ଦାସତ୍ୱ ମନୋଭାବ ଆମ ସାହିତ୍ୟ ଭିତରେ ଏତେ ମାତ୍ରାରେ ପ୍ରବେଶ କରିଛି ଯେ, ଆଧୁନିକ ରଚନା କାଳରେ ଏ ପ୍ରଭାବ ବେଶୀ ଅନୁଭୂତ ହେଉଛି । କାରଣ ଆଲୋଚକମାନେ, ସମାଲୋଚକଗଣ ଆଲୋଚନା କଲାବେଳେ ପାଶ୍ଚାତ୍ୟ ଛାଞ୍ଚ ଓ ଫର୍ମକୁ ଆମ ସାହିତ୍ୟ ଉପରେ ପକାଇ ମାପିବାକୁ ଚେଷ୍ଟା କରୁଛନ୍ତି । ଆମ ନିଜର ଯେ ଏକ ସଂସ୍କୃତି ରହିଛି, ଆମ ପରମ୍ପରା କେତେ ମହାନ୍ ଓ ପ୍ରଶସ୍ତ, ଆମ ସଭ୍ୟତା ଓ ସଂସ୍କୃତି କିଭଳି ଭାବରେ ଯୁଗ ଯୁଗ ଧରି, ଶତାବ୍ଦୀ ଶତାବ୍ଦୀ ଧରି ଆମ ଲୋକଭାଷା ଓ ସାହିତ୍ୟକୁ 'ବହୁତ୍ୱ ମଧ୍ୟରେ ଏକତ୍ୱ' କରି ବାନ୍ଧି ରଖିଛି, ତାହା ଆମେ ଭୁଲି ଯାଇଛୁ । ସାମନ୍ତବାଦ,

ଉପନିବେଶବାଦ, ସାମ୍ରାଜ୍ୟବାଦ ଇତ୍ୟାଦିର ବ୍ୟାପକପ୍ରଭାବରୁ ଆମେ ନିଜେ ମୁକ୍ତହୋଇ ପାରିନାହୁଁ; ଯଦିଓ ଆମ ସାହିତ୍ୟ, ସଂସ୍କୃତି ଓ ପରମ୍ପରାର ଅନ୍ତର୍ନିହିତ ସ୍ୱର ଏବେ ବି ନଷ୍ଟ ଭ ଓ ମଳିନ ହୋଇନାହିଁ । ଆମର ଯେଉଁ ପରିପୁଷ୍ଟ ସଂସ୍କୃତି ରହିଆସିଛି, ତାକୁ ଜାଣିବା ବେଳକୁ ଆମ ଉପରେ ପାଶ୍ଚାତ୍ୟର ପ୍ରଭାବ ଆମକୁ ଅନ୍ଧହରୁ ମିଶ୍ରି ମିର୍ଚ୍ଚି ଦୃଷ୍ଟିକୋଣ ମଧ୍ୟରେ ପ୍ରବେଶ କରାଇଦେଲଣି । ଆମ ଉପନିଷଦର ସେହି ମହାନ୍ ସ୍ୱର 'ଅସତୋ ମା ସତ୍ ଗମୟ' ମୋତେ ଅସତ୍ୟରୁ ସତ୍ୟକୁ ନେବାକୁ ଆମେ କେବଳ ଆମ ଅବଚେତନ ମନ ଭିତରେ ରଖିଛୁ । ଆମେ ଚଡ଼ାବାଘର ଖୋଳପା ପିନ୍ଧି ନିଜକୁ ବଡ଼ ବୋଲି ଯେତେ ଭାବିଲେ ମଧ୍ୟ ଆମର ସ୍ୱତନ୍ତ୍ରିତକୁ ଜାବୋଡ଼ି ଧରିଛୁ । ରକ୍ଷଣଶୀଳ ଓ ପାଶ୍ଚାତ୍ୟ ଉପନିବେଶବାଦର ସଂସ୍କୃତିକୁ ଆମ ସଂସ୍କୃତି ବୋଲି ଗ୍ରହଣ କରିଛୁ । ଜାତିସ୍ୱତା, ଧର୍ମ ଓ ଜାତି ନାମରେ କାହିଁକି ଆମେ ଭାଗ ଭାଗ ହେଉଛୁ ? କାହିଁକି ସଂଘର୍ଷ, ହିଂସା, ଦ୍ୱେଷ, ବିଚ୍ଛିନ୍ନତା, ରାଜନୈତିକ ଅସାଧୁତା ? ବୃହତ୍ତ ଗଣତନ୍ତ୍ର ରାଷ୍ଟ୍ରରେ ସରକାର ପରେ ସରକାର ଯାଇଛି—କେବଳ ଅସ୍ଥିରତା ? ଆମେ କାହିଁକି ନିଜକୁ ଦୁର୍ବଳ ବୋଲି ଭାବୁଛୁ ? ତଥାପି ଆମେ ଲେଖୁଛୁ । ଆମ କଲମରେ ଭାବ ନାହିଁ; ଆମ ହୃଦୟ ଦୁର୍ବଳ, ଆମ ଚିନ୍ତାରାଜ୍ୟ ଶୂନ୍ୟ ଓ ଖଣ୍ଡିତ, ଆମ ବୌଦ୍ଧିକତା ଧାରକରା ସଂସ୍କୃତି । ତଥାପି ଆମେ ଲେଖୁଛୁ । ଲେଖିବାର ଚେଷ୍ଟା ଅବ୍ୟାହତ ରଖିଛୁ ବୋଲି ଧାରଣା ଦେଉଛୁ । ବର୍ଷକରେ, ଦି' ବର୍ଷରେ ଖଣ୍ଡେ ଖଣ୍ଡେ ବହି ପ୍ରକାଶ କରି ଏକହଜାର କପି ଦଶ ବର୍ଷରେ ବିକ୍ରି ହେବାର ସମ୍ଭାବନା ନଥାଇ ଆମେ ଲେଖକ, ସାହିତ୍ୟିକ ହେବାର ବୃଥା ଆସ୍ଫାଳନ କରୁଛୁ । କିଏ ଆମକୁ ପଢ଼ୁଛି, କିଏ ଆମକୁ ମନେରଖୁଛି, ଆମେ କ'ଣ ଲେଖୁଛୁ ଓ କାହାପାଇଁ ଲେଖୁଛୁ, ତାର ହିସାବ ଆମ ପାଖରେ ନାହିଁ । କୁହାଯାଉଛି ଭାରତରେ ଶତକଡ଼ା ୯୦ ଭାଗ ପୁସ୍ତକ ଯାହା ପ୍ରକାଶ ପାଉଛି, ତାହା ବର୍ଷକ ମଧ୍ୟରେ ଲୋକେ ଭୁଲି ଯାଉଛନ୍ତି ।

ଏଇ ନିକଟରେ ଆମ ଭାଷାର ସଫଳ ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କଲେ । କୌଣସି ଏକ କଲେଜର ଭାଷା ସାହିତ୍ୟର ଅଧ୍ୟାପକ ଅନ୍ୟ ଜଣେ ବନ୍ଧୁ ଅଧ୍ୟାପକଙ୍କୁ ପ୍ରଶ୍ନ କଲେ, "ଶାନ୍ତନୁ ବାବୁ କେଉଁ ବହି ପାଇଁ ପୁରସ୍କାର ପାଇଲେ ?" ଏହା ଯଦି ସତ୍ୟ ହୁଏ, ତେବେ ଅନ୍ୟମାନଙ୍କ କଥା କିଏ ପଚାରେ । ଏପରି କାହିଁକି ହୁଏ ? କେଉଁଥି ପାଇଁ ? କାରଣ କ'ଣ ଆମର ଆମ ସାହିତ୍ୟ ପ୍ରତି, ସଂସ୍କୃତି ପ୍ରତି ସଚେତନତାର ଅଭାବ ? ଆମେ କେବଳ ପାଶ୍ଚାତ୍ୟ ସଂସ୍କୃତିକୁ ପୁଷ୍ଟକରି ଆମ ନିଜର ମାଟି, ପାଣି, ପବନକୁ ଭୁଲି ଯାଇଛେ । ଭୁଲି ଯାଇଛେ ସାରଳା ଦାସଙ୍କୁ, ଜଗନ୍ନାଥ ଦାସଙ୍କୁ, ଭାଗବତ ଓ ମହାଭାରତକୁ ।

# କବି ଅନନ୍ତ ପଟ୍ଟନାୟକ

ଜୁନ୍ ୨୫ ତାରିଖ ୧୯୮୭ ମସିହା । ସେ ଦିନର ସକାଳ ଆଜିର ସକାଳ ପରି ନଥିଲା । ହଠାତ୍ ଦୀପଟିଏ ଲିଭିଗଲା । ସେ ଦୀପ ଉଜ୍ଜ୍ୱଳ ହୋଇ, ଜାଜ୍ଜ୍ୱଲ୍ୟମାନ ହୋଇ ଜଳୁଥିଲା ଓଡ଼ିଆ ସାହିତ୍ୟର ପ୍ରଶସ୍ତ ପ୍ରାଙ୍ଗଣରେ । ସେ ଥିଲେ କବି ଅନନ୍ତ ପଟ୍ଟନାୟକ । କବି ଅନନ୍ତ ପଟ୍ଟନାୟକଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ବିଶିଷ୍ଟ କଥାଶିଳ୍ପୀ ଗୋପୀନାଥ ମହାନ୍ତି କହିଥିଲେ—"କବିତା ଲେଖିଚ ଅନନ୍ତ ପଟ୍ଟନାୟକ । ଯାହା ଭାବିଛୁ ଯୋଉଥି ପାଇଁ ସେ ଦିନ ଦିନ ରାତି ରାତି କାନ୍ଦିଚ, ଯୋଉଥିଲାଗି ତା' ଆଖି ସେମିତି କୋରଡରେ ପଶିଥିଲା, ସେଇ ମଳମୁଣ୍ଡିଆ, ଯାହାଙ୍କ ପାଇଁ କବିତା ଲେଖିବାକୁ ସେ ଜନ୍ମ ହୋଇଥିଲା । ସେ ଜୀବନଯାପନ କରିଗଲା ସେଇଆ ।" କବି ଭାବରେ ଉନ୍ନତ ଶିଶୁସାହିତ୍ୟ ସୃଷ୍ଟି କରି ଓଡ଼ିଆ ସାହିତ୍ୟରେ ଏକ ନୂତନତା ଆଣିବାରେ ଅନନ୍ତ ପଟ୍ଟନାୟକ ଏକ ନିଜସ୍ୱ ସ୍ଥାନ ଦାବି କରନ୍ତି । ଶିଶୁମାନଙ୍କ ପାଇଁ ଭାଷା ସୃଷ୍ଟି କରିବାରେ ସିଦ୍ଧହସ୍ତ ଅନନ୍ତବାବୁ ଯେଉଁ ଢଙ୍ଗରେ କବିତା ଲେଖିଛନ୍ତି, ତାହା ଏ ପର୍ଯ୍ୟନ୍ତ କାହାରି ଲେଖନୀରୁ ପ୍ରସୂତ ହୋଇନାହିଁ । କବିତା ଓ ଶିଶୁସାହିତ୍ୟ ବ୍ୟତୀତ ତାଙ୍କ ଲେଖନୀରୁ ଅନ୍ୟ ଅନେକ ରଚନା ପ୍ରକାଶ ପାଇଛି । ସେ 'ସାହିତ୍ୟ ରଚନା' ପ୍ରବନ୍ଧରେ ଲେଖିଛନ୍ତି, "ସାହିତ୍ୟ ମନୁଷ୍ୟ ଜୀବନର ପ୍ରତିଫଳନ ନୁହେଁ— ନିର୍ଜୀବ ଦର୍ପଣ ନୁହେଁ, ଜୀବନକୁ ବିସ୍ତୃତ ଓ ଗଭୀର ଭାବରେ ଗ୍ରହଣ କରେ । ଏଥିରେ ବିସ୍ମୟର ସ୍ଥାନ ନାହିଁ । କାରଣ—ସାହିତ୍ୟ ମନୁଷ୍ୟସୃଷ୍ଟ ହୋଇ ମଧ୍ୟ ସେହି ଜୀବନର ଅଂଶବିଶେଷ ।" ତାଙ୍କର ଏହି ମନ୍ତବ୍ୟ ତାଙ୍କ ସାହିତ୍ୟର ପ୍ରତ୍ୟେକ କ୍ଷେତ୍ରରେ ପ୍ରତିଫଳିତ । କବିତା ବ୍ୟତୀତ ସେ ଲେଖିଥିବା କେତେଗୁଡ଼ିଏ ଗଳ୍ପକୁ ଆଲୋଚନା କରାଯାଇପାରେ । ମଡରର, ଫେରିଆ, ଚଢ଼ା—ଉତ୍ତରା, ସଂଗ୍ରାମ, ଗପ ନୁହେଁ ଅଃଦୌ, ବିଡମ୍ବନା, ଏ ମନ ପାଷେ ନାହିଁ ଯାହା, ପେନ୍ ବାଗୃଡୁ ଗୃଡୁ ଇତ୍ୟାଦି ଗଳ୍ପଗୁଡ଼ିକରେ ତାଙ୍କ ନିଜସ୍ୱ ଶୈଳୀର ପରିଚୟ ମିଳେ । ଏତଦ୍‌ଭିନ୍ନ ତାଙ୍କ ରଚିତ ନାଟକ 'ରାବଣ' ଏକ ଭିନ୍ନ ସ୍ୱାଦର ନାଟକ । ରାବଣ ଚରିତ୍ର ମାଧ୍ୟମରେ ସେ ଶ୍ରେଣୀ ଚରିତ୍ର ଓ ଶ୍ରେଣୀ ସଂଗ୍ରାମ ସଂପର୍କରେ କହିବାକୁ ଭୁଲିନାହାନ୍ତି । ସେତୁବନ୍ଧ ସ୍ଥାପନ କରି ଶିବଙ୍କ ପୂଜା କରିବା ପାଇଁ ରାମଚନ୍ଦ୍ର ରାବଣକୁ ପୁରୋଧା କରି ଆହ୍ୱାନ କରିଛନ୍ତି । ରାବଣ ରାମଙ୍କର ଅନୁରୋଧ ରକ୍ଷାକରି ଆସିଛନ୍ତି ଏବଂ ରାବଣ ମୁହଁରେ ଅନନ୍ତ ପଟ୍ଟନାୟକ ମାର୍କ୍ସୀୟ ଚେତନାର ଶୈଳୀକୁ ଉପସ୍ଥାପିତ କରିଛନ୍ତି ।

ରାବଣର ତେଜ ମ୍ଳାନ ନହେବା ଯାଏ ତମେ ବିଷ୍ଣୁ ରୂପରେ ସାଜି ପାରିବ ନାହିଁ । ପ୍ରଜାଙ୍କୁ ତମର ଧର୍ମର ମଦିରା ପିଆଇ ପାରିବ ନାହିଁ । ପ୍ରଜା ଧର୍ମର ମଦିରା ପିଇଲେ ତୁମକୁ ଦେବତ୍ୱ ଦେବେ ସିନା ।" ପୁନଶ୍ଚ ରାବଣ କହୁଛି— "ଦେଖିଲ ତ ରାଘବ, ଅନାର୍ଯ୍ୟ ସଭ୍ୟତାର ମହତ୍ତ୍ୱ ଶତ୍ରୁର ମଙ୍ଗଳ ପାଇଁ ସେ ନିଜର ଧ୍ୱଂସ ବି ଆହ୍ୱାନ କରିପାରେ··· ।"

ରାବଣ ମୃତ୍ୟୁଶଯ୍ୟାରେ ଦେବତ୍ୱକୁ ଛିଟିକାଏ ମାରି ଯେପରି ଅନନ୍ତ ପଟ୍ଟନାୟକ କୁହାଇଛନ୍ତି, ତାହା ମାନବତ୍ୱର ପଥକୁ ଉଜ୍ଜ୍ୱଳ ଓ ଆଲୋକିତ କରିଛି । ସେ କହୁଛନ୍ତି— "ଗୋଟିଏ ନାରୀ ଲାଗି ଲଙ୍କାର କୋଟି କୋଟି ନାରୀର ନେତ୍ରରୁ ଅଶ୍ରୁ ନ ବୁହାଇ ରୁଧିର ବୁହାଇଦେଲ—ଏଇ ତମର ଦେବତ୍ୱର ପ୍ରକାଶ ! ଦେଖିଲ, ଦେଖିଲ ରାଘବ—କେତେ ସହସ୍ର ଶିଳ୍ପୀର ଆଜୀବନ କଳ୍ପନା ଓ ସାଧନାର ସାମଗ୍ରୀ ଏ ଲଙ୍କାକୁ ଆଜି ନାରୀର ମୋହରେ କ'ଣ କରିଛ ? ଜୀବନରେ ଏପରି ଶ୍ୟାମଳ ସୁନ୍ଦର ଦେଶ ଗଢ଼ି ପାରିବ ତ ?" ରାବଣ ନାଟକ ଅନନ୍ତ ପଟ୍ଟନାୟକଙ୍କ ଲେଖନୀରେ ମାନବତାର ଜୟ ଜୟକାର କରିଛି । ମଣିଷକୁ ଶ୍ରେଷ୍ଠ ଆସନ ଦେଇ ନ୍ୟାୟ ଓ ଧର୍ମର ସଂଜ୍ଞା ନିରୂପଣ କରିବାକୁ ଆହ୍ୱାନ କରିଛି ।

ଶିଶୁସାହିତ୍ୟ ଲେଖିବାବେଳେ ଅନନ୍ତବାବୁ ଶିଶୁପ୍ରାଣର ଆବେଗ, ଉତ୍କଣ୍ଠା, ଆଗ୍ରହକୁ ଯେପରି ଭାବରେ ବୃଦ୍ଧି କରିବାକୁ ଚେଷ୍ଟାକରି ଭାଷା, ଭାବ, ଛନ୍ଦ, କୌତୁକ ଓ କଳ୍ପନାର ଆଶ୍ରୟ ନେଇଛନ୍ତି, ରାବଣ ନାଟକରେ ସମାଜ ବ୍ୟବସ୍ଥା ପ୍ରତି ବ୍ୟଙ୍ଗ, ବିଦ୍ରୂପର ସ୍ୱର ଗୁଞ୍ଜରି ଉଠିଛି । କିନ୍ତୁ ମୌଳିକ ଘଟଣାକୁ ବିକୃତ କରିନାହାନ୍ତି ।

ଅନନ୍ତ ପଟ୍ଟନାୟକ ଶବ୍ଦ ଚୟନରେ ଯେଉଁ ଭେଳିକି ଓ କମିଆ ଦେଖେଇଛନ୍ତି, ସେହିପରି ବ୍ୟଙ୍ଗ ବିଦ୍ରୂପର ଶାଣିତ ତରବାରୀ ତାଙ୍କ ଗଳ୍ପର ଚରିତ୍ରମାନଙ୍କ ମାଧ୍ୟମରେ ସମାଜ ବ୍ୟବସ୍ଥାକୁ ଛିନ୍‌ଭିନ୍ କରି ପକାଇଛନ୍ତି ଏବଂ ସାମ୍ୟବାଦର ନିଚ୍ଛକ ସତ୍ୟ ହିଁ ମାନବବାଦ; ଏହା ପ୍ରମାଣ କରି ଦେଖାଇ ଯାଇଛନ୍ତି ।

ବର୍ତ୍ତମାନ ସମଗ୍ର ପୃଥିବୀ ବଦଳୁଛି । ସେହି ପରିବର୍ତ୍ତନର ସ୍ୱର ସାହିତ୍ୟ ମାଧ୍ୟମରେ କିପରି ପ୍ରବେଶ କରି ମାନବବାଦ ପ୍ରତିଷ୍ଠା କରିବ, ତାହା ଆଜିର ଆବଶ୍ୟକତା ନୁହେଁକି ?

# ବଂଶୀଧର ଭୂୟାଁ

ସାହିତ୍ୟ ସମ୍ପର୍କରେ ଭାବିବାବେଳେ ସାହିତ୍ୟିକମାନଙ୍କ ବିଷୟରେ ମନକୁ ଆସେ । ଲେଖାଲେଖି କରୁଥିବା ଲୋକମାନେ ପରସ୍ପର ମଧ୍ୟରେ କେବଳ ଭାବଗତ ସମ୍ପର୍କ ଯେ ରଖନ୍ତି, ତାହା ନୁହେଁ, ବରଂ ସେମାନେ ଅନେକ କ୍ଷେତ୍ରରେ ବ୍ୟକ୍ତିଗତ ସମ୍ପର୍କ ରକ୍ଷା କରନ୍ତି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏ ବର୍ଷଟି ଯେତିକି ସୁଖକର, ସେତିକି ଦୁଃଖଦାୟକ । ସମସ୍ତ ସମୟରେ ଏପରି ମୁହୂର୍ତ୍ତିମାନ ଆସେ, ଯେତେବେଳେ ନିଜର ସମଗୋଷ୍ଠୀ ସାହିତ୍ୟିକଙ୍କର ବିୟୋଗଜନିତ ଦୁଃଖ ହୃଦୟକୁ ଭାରାକ୍ରାନ୍ତ କରିପକାଏ ; ଆଖିରୁ ଟପ୍ ଟପ୍ ହୋଇ ଲୁହ ଝରିପଡ଼େ । ଏହି ବର୍ଷଟିସାରା ସେହିପରି ଜଣକ ପରେ ଜଣେ ଆମକୁ ଛାଡ଼ି ଚାଲିଯାଉଛନ୍ତି । ସେମାନଙ୍କ ମୃତ୍ୟୁରେ ଆଖିରେ ଲୁହ ଭର୍ତ୍ତି ହୋଇଯାଉଛି । ଏ ବର୍ଷର ପ୍ରାରମ୍ଭରୁ ଡକ୍ଟର କୃଷ୍ଣପ୍ରସାଦ ମିଶ୍ର, ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାସ, ବସନ୍ତ କୁମାର ଶତପଥୀ, କାହ୍ନୁଚରଣ ମହାନ୍ତି, ମୁରାରୀମୋହନ ଜେନା ଓ ବଂଶୀଧର ଭୂୟାଁଙ୍କର ବିୟୋଗ ଆମକୁ ଦୁଃଖାଭିଭୂତ କରି ପକାଇଛି ।

ବଂଶୀଧର ଭୂୟାଁଙ୍କର ଗତ ୩୧ ତାରିଖରେ ତିରୋଧାନ ଘଟିଛି । ଜନସାହିତ୍ୟର ସମ୍ପାଦକ ଭାବେ ଜଣାଶୁଣା ବଂଶୀଧରବାବୁ ମୋଠାରୁ ଢେର୍ ବଡ଼ । କିନ୍ତୁ ଯେଉଁ କେତୋଟିଥର ତାଙ୍କ ସହିତ ଦେଖାହୋଇଛି, ତାଙ୍କର ମିଷ୍ଟ ବ୍ୟବହାର ମୋତେ ତାଙ୍କ ଆଡ଼କୁ ଆକର୍ଷିତ କରିବାରେ ସକ୍ଷମ ହୋଇପାରିଛି । ଏଇ କେତେଦିନ ତଳେ ତାଙ୍କର ଖଣ୍ଡିଏ ଚିଠି ପାଇଥିଲି । ଜନସାହିତ୍ୟକୁ ପୁନର୍ଜୀବନ କିପରି ଦିଆଯାଇପାରିବ, ସେ ବିଷୟରେ ଲେଖିଥିଲେ । ମୁଁ ଏପର୍ଯ୍ୟନ୍ତ ତାଙ୍କ ଚିଠିର ଉତ୍ତର ଦେଇପାରି ନାହିଁ । ଆଉ ଚିଠି ଦେବାର ଅବକାଶ ମଧ୍ୟ ସେ ମୋତେ ଦେଲେ ନାହିଁ । ମୁଁ ଚିଠିଟିର ଉତ୍ତର ନ ଦେଇପାରିଥିବାର ଅପରାଧବୋଧରେ ନିଜକୁ କେବଳ ଦୋଷୀ ବୋଲି ଭାବୁ ନାହିଁ ; ତାଙ୍କ ନିକଟରେ ଏକ ଅକ୍ଷମଣୀୟ ଅପରାଧ କରିଛି ବୋଲି କ୍ଷମା ଯାଚନା କରୁଛି । ଏପରି ସହୃଦୟ ମଣିଷଟିଏ, ନିଜର ହୃଦୟର ସମସ୍ତ ସ୍ନେହ ଓ ମମତାକୁ ଅଜାଡ଼ି ଦେଇ, ଜନସାହିତ୍ୟକୁ ବଞ୍ଚାଇବାର ଯେଉଁ ଚେଷ୍ଟା କରିଆସିଥିଲେ, ତାଙ୍କ ଅବର୍ତ୍ତମାନରେ ସେହି ପତ୍ରିକାଟିର ଭାଗ୍ୟ ଉପରେ ଏକ କଳାପରଦା ଘୋଡ଼ାଇ ହୋଇପଡ଼ୁଛି । ଜନସାହିତ୍ୟରେ ଅନେକ ଉପନ୍ୟାସ ଓ

ଗଳ୍ପ ପ୍ରକାଶ ପାଇଛି । ଅନେକ ନୂତନ ଲେଖକର ପ୍ରଥମ ହସ୍ତାକ୍ଷର ସେଥିରେ ପରିମିତ ହୋଇ ସେମାନଙ୍କୁ ନୂତନ ଉନ୍ମାଦନା ଓ ସାମର୍ଥ୍ୟ ଭବିଷ୍ୟତ ପାଇଁ ଯୋଗାଇବାରେ ସାହାଯ୍ୟ କରିଛି । ଆଜି ସେହି ପତ୍ରିକାର ଯଶସ୍ୱୀ ସଂପାଦକ ବଂଶୀଧରବାବୁ ନାହାନ୍ତି । ପତ୍ରିକାଟିଏ ଧରି ଲେଖକଟି ପାଖରେ ପହଞ୍ଚିଯାଇ ତାଙ୍କୁ ସେଥିରୁ ଗୋଟିଏ ଦେଇ ନିଜ ଭିତରେ ଅମାପ ଆନନ୍ଦଲାଭ କରୁଥିବା ମଣିଷଟିକୁ ଆଉ ଦେଖିବାକୁ ପାଇବା ନାହିଁ । କିନ୍ତୁ ପତ୍ରିକାଟି ପ୍ରତି ତାଙ୍କର ନିଷ୍ଠା, ଆଦର ଓ ଯତ୍ନଶୀଳ ମନୋଭାବ କ୍ୱଚିତ୍ ସଂପାଦକଙ୍କଠାରେ ଦେଖିବାକୁ ମିଳେ । ଅନେକ ପତ୍ରିକା ପ୍ରକାଶ ପାଉଛି । କେତେକ ଧାରାବାହିକ ପ୍ରକାଶିତ ହେବାବେଳେ ଅନ୍ୟ କେତେକ ସାମୟିକ ପ୍ରକାଶ ପାଉଛି । କେତେକ ପତ୍ରିକାର ଜନ୍ମ ଓ ମୃତ୍ୟୁ ଏକାଠି ହେବାର ଦୃଷ୍ଟାନ୍ତ ମଧ୍ୟ ରହିଛି । କିନ୍ତୁ ପତ୍ରିକାଟି ପ୍ରତି ବାତ୍ସଲ୍ୟ ମମତାର ରସସିକ୍ତ ଭାବନା ସମସ୍ତଙ୍କଠାରେ ଦେଖିବାକୁ ମିଳୁ ନାହିଁ । ଲେଖକଟି ପ୍ରତି ଏକ ପିତୃସୁଲଭ ଆଦର ଓ ଶ୍ରଦ୍ଧାର ଅଭାବ ପରିଲକ୍ଷିତ ହେଉଛି ।

ବଂଶୀଧରବାବୁ ନାହାନ୍ତି । ସେ ପୁଣି ଥରେ ଫେରି ଜନସାହିତ୍ୟକୁ ନିଜ ହାତବ୍ୟାଗ୍‌ରେ ଧରି କଟକ—ଭୁବନେଶ୍ୱର ପରିକ୍ରମା କରି ଲେଖକମାନଙ୍କୁ ଆଦର ସମ୍ଭାଷଣ କରି ଖଣ୍ଡିଏ ଖଣ୍ଡିଏ ଜନସାହିତ୍ୟ ହାତକୁ ଟେକିଦେବାର ସମ୍ଭାବନା ନାହିଁ । ଏକ ସରଳ, ସାଧାସିଧା ମଣିଷ ଭାବରେ ବଂଶୀଧର ଭୂୟାଁଙ୍କର ସାହିତ୍ୟ ପ୍ରତି ଅବଦାନକୁ କେହି ଭୁଲିପାରିବେ ନାହିଁ । ସେ ଆମ ଆଗରେ ନିଜ ଆଦର୍ଶଜୀବନକୁ ରଖିଯାଇଛନ୍ତି । ଆଦର୍ଶ-ଜୀବନକୁ ତ୍ୟାଗପୂତ କରି ଜନସାହିତ୍ୟକୁ ସାହିତ୍ୟର ବ୍ୟାପକ ସୀମାଙ୍କନ କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ଆସନ ଦେବାକୁ ସକ୍ଷମ ହୋଇପାରିଛନ୍ତି । ତାଙ୍କର ଅଭାବକୁ ମୁଁ ଅନୁଭବ କରୁଛି ; ମୋ ପରି ଅନେକ ଶ୍ରଦ୍ଧାଳୁ ତାଙ୍କ ବିୟୋଗ ଯୋଗୁଁ ଆଖିରୁ ଲୁହ ଗଡ଼ାଉଥିବେ ନିଶ୍ଚୟ ।

ମୁଁ ତାଙ୍କ ଚିଠିର ଉତ୍ତର ଦେଇପାରି ନାହିଁ । ମୁଁ କିନ୍ତୁ ତାଙ୍କୁ ମନେରଖିଛି । ମୋର ଜଣେ ସହୃଦୟ ଅଗ୍ରଜଭାବେ ମୁଁ ତାଙ୍କୁ ନମସ୍କାର କରୁଛି । ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଏକନିଷ୍ଠ ପ୍ରତିବଦ୍ଧତା ସମସାମୟିକ ଓଡ଼ିଆ ପତ୍ରିକାର ସମ୍ପାଦକ-ମାନଙ୍କ ପାଇଁ ପଥପ୍ରଦର୍ଶକ ହେବ ବୋଲି ଆଶା କରୁଛି ।



# ସାହିତ୍ୟରେ ଉପାୟନ

ଶାରଳା ପୁରସ୍କାର କମିଟି ଦ୍ୱାରା ମନୋନୀତ ହୋଇ ଏ ବର୍ଷର ଶାରଳା ପୁରସ୍କାର ଶ୍ରୀ ଭୁବନେଶ୍ୱର ବେହେରା ପାଇବେ ବୋଲି ଘୋଷଣା କରାଯାଇଛି । ଆମେ ତାଙ୍କୁ ଏ ଅବସରରେ ଆନ୍ତରିକ ସଶ୍ରଦ୍ଧ ଅଭିନନ୍ଦନ ଜ୍ଞାପନ କରୁଛୁ ।

ଓଡ଼ିଶାରେ ବହୁ ସାହିତ୍ୟ ଅନୁଷ୍ଠାନ ତରଫରୁ ପୁରସ୍କାର ପ୍ରଦାନ କରାଯିବା ସହିତ କେତେକ ବରିଷ୍ଠ ଓ ସମ୍ମାନାସ୍ପଦ ସାହିତ୍ୟିକମାନଙ୍କୁ ଉପାୟନ ପ୍ରଦାନ କରାଯାଉଛି । ଏହା କେବଳ ସାହିତ୍ୟ ଅନୁଷ୍ଠାନମାନଙ୍କ ମଧ୍ୟରେ ସୀମିତ ନ ହୋଇ ଓଡ଼ିଶା ସାହିତ୍ୟ ଏକାଡେମୀ ଭଳି ଅନୁଷ୍ଠାନ ପର୍ଯ୍ୟନ୍ତ ବ୍ୟାପିଯାଇଛି । ପ୍ରତ୍ୟେକ ଅନୁଷ୍ଠାନର ମୁଖ୍ୟ କାର୍ଯ୍ୟ ପୁରସ୍କାର ଓ ଉପାୟନ ପ୍ରଦାନ । ସାହିତ୍ୟର ବିକାଶ ଗୌଣ । ସାହିତ୍ୟ ଅନୁଷ୍ଠାନ ତରଫରୁ ଏକ ପତ୍ରିକା ସାମୟିକ ପ୍ରକାଶ କରି ସେଥିରେ ଗଳ୍ପ, କବିତା ଓ ପ୍ରବନ୍ଧ ପ୍ରକାଶ କରିବା ସହିତ କିଛି ବ୍ୟକ୍ତିବିଶେଷଙ୍କୁ ପୁରସ୍କାର ପ୍ରଦାନ ଓ ଉପାୟନ ପ୍ରଦାନରେ ଅନୁଷ୍ଠାନଗୁଡ଼ିକର କାର୍ଯ୍ୟ ପ୍ରାୟ ସୀମିତ । ଫଳରେ ସାହିତ୍ୟ ଓ ଭାଷାର ପ୍ରଗତି ହେବା ଦୂରେ ଥାଉ ; ବରଂ ସାମନ୍ତବାଦୀ ମନୋବୃତ୍ତି ବ୍ୟାପକ ଭାବେ ଆମ ଭିତରକୁ ପଶିଆସୁଛି ।

ପୁରସ୍କାର ଦେବା ଏକ ସାମନ୍ତବାଦୀ ଚଳଣି । ବହୁ ସମୟରେ ବିଭିନ୍ନ ସାହିତ୍ୟ ପୁରସ୍କାର ନେଇ ଅନେକ ତର୍କବିତର୍କ, ଆଲୋଚନା ଓ ସମାଲୋଚନା ହୋଇଛି । ଏପରିକି ପୁରସ୍କାରକୁ ଦୁଇଜଣ ସାହିତ୍ୟିକଙ୍କ ମଧ୍ୟରେ ବାଣ୍ଟିଦେବାର ଅନେକ ଦୃଷ୍ଟାନ୍ତ ରହିଛି ଏବଂ ଏହି ପଦ୍ଧତିକୁ ବିରୋଧ କରି କେତେକ ସାହିତ୍ୟିକ ପୁରସ୍କାର ବର୍ଜନ ମଧ୍ୟ କରିଛନ୍ତି । କୌଣସି ସମୟରେ ବିଚାରକମଣ୍ଡଳୀ ଦ୍ୱାରା ଯଦି ଦୁଇଜଣ ସାହିତ୍ୟିକଙ୍କୁ ଗୋଟିଏ ପୁରସ୍କାର ଦେବା ପାଇଁ ନିଷ୍ପତ୍ତି ନିଆଯାଏ, ତେବେ ତା'ର ପୁନର୍ମୂଲ୍ୟାୟନ କରିବା ପାଇଁ ଏକ ବିଶେଷ କମିଟି ଗଠନ କରାଯିବା ଉଚିତ ଏବଂ ଜଣଙ୍କୁ ପୁରସ୍କାର ଦେବାର ବ୍ୟବସ୍ଥା ହେବା ବାଞ୍ଛନୀୟ ।

ଏଠାରେ ପୁରସ୍କାର ସମ୍ପର୍କରେ ଆଲୋଚନା କରିବା ଆମର ଉଦ୍ଦେଶ୍ୟ ନୁହେଁ । ବରଂ ପୁରସ୍କୃତ ହେଉଥିବା ଲେଖକମାନଙ୍କ ସହିତ ଉପାୟନ ପାଉଥିବା ବ୍ୟକ୍ତି-ବିଶେଷଙ୍କୁ ଯେପରି ନ୍ୟୂନ କରି ଦେଖାଯାଉଛି, ସେଥିପ୍ରତି ପାଠକମାନଙ୍କର ଦୃଷ୍ଟି

ଆକର୍ଷଣ କରୁଛି । ପୁରସ୍କାର ପ୍ରଦାନ ଅବକାଶରେ କେତେକ ବ୍ୟକ୍ତିବିଶେଷଙ୍କୁ ଉପାୟନ ପ୍ରଦାନ କରିବା ଅତ୍ୟନ୍ତ ହାସ୍ୟାସ୍ପଦ । ଉପାୟନ ପାଉଥିବା ବ୍ୟକ୍ତି ଜଣେ ଜଣେ ସମ୍ମାନାସ୍ପଦ ବରିଷ୍ଠ ସାହିତ୍ୟିକ, ଶିଳ୍ପୀ । ତେଣୁ ସେମାନଙ୍କୁ ନ୍ୟୂନ କରି ଦେଖିବା ଏବଂ ଫୁଲତୋଡ଼ାଟିଏ, ଚଦରଟିଏ ଦେଇ ସମ୍ବର୍ଦ୍ଧନା କରିବା ରୁଚିହୀନ ଓ ମର୍ଯ୍ୟାଦାହାନି । ଯେକୌଣସି ପୁରସ୍କାର ସଭାକୁ ଲକ୍ଷ୍ୟ କଲେ ଦେଖିବେ କିଭଳି ଦୈନ୍ୟ ଭାବରେ ଉପାୟନ ପାଉଥିବା ବ୍ୟକ୍ତିବିଶେଷଙ୍କୁ ମଞ୍ଚକୁ ଆସିବାକୁ ଆହ୍ୱାନ କରାଯାଏ ଏବଂ ଉପାୟନ ପ୍ରଦାନ କରାଯାଏ । ଏପରିକି ମଞ୍ଚକୁ ସଶ୍ରଦ୍ଧ ଭାବରେ ତାଙ୍କୁ ପାଚ୍ଛେଟି ଅଣାଯାଏ ନାହିଁ । ମଞ୍ଚ ଉପରେ ଆସନ ଦେବା ତ ଦୂରର କଥା ।

ଅତୀତରେ ରାଜରାଜୁଡ଼ାମାନେ, ଜମିଦାରମାନେ ସେମାନଙ୍କର ଅହଂ ତୃପ୍ତି ନିମିତ୍ତ କବିମାନଙ୍କୁ, ଲେଖକମାନଙ୍କୁ ସମ୍ମାନ ପ୍ରଦର୍ଶନ କରି ଉପାଧିମାନ ଦେଉଥିଲେ । ଏହାଦ୍ୱାରା ରାଜ୍ୟରେ ସେମାନଙ୍କ ପଢ଼ିଆସରେ ଅଭିବୃଦ୍ଧି ଘଟିବ । କାରଣ ଜନଗଣଙ୍କର ପ୍ରିୟ ଭାବରେ ସାହିତ୍ୟିକମାନେ ସବୁଠାରେ ଆଦୃତ । ତାଙ୍କ ମାଧ୍ୟମରେ ଲୋକମାନଙ୍କ ମଧ୍ୟରେ ଏକ ଭାବମୂର୍ତ୍ତି ସୃଷ୍ଟି କରିବାର ପ୍ରୟାସ କରିବା ପାଇଁ ପୁରସ୍କାର, ଉପାୟନ ଓ ଉପାଧି ଦେବାର ବ୍ୟବସ୍ଥା ସେମାନେ ପ୍ରବର୍ତ୍ତନ କରୁଥିଲେ । ବର୍ତ୍ତମାନ ଯେଉଁ ପୁରସ୍କାର ଦିଆଯାଉଛି, ତାହା ଭାଷା ସାହିତ୍ୟର ଅଭିବୃଦ୍ଧି ପାଇଁ ଉଦ୍ଦିଷ୍ଟ । ଜଣେ ଜଣେ ଲେଖକ ନିଜ ଜୀବଦ୍ଦଶା ମଧ୍ୟରେ ଅନେକ ସୃଷ୍ଟି କରି ଭାଷା-ସାହିତ୍ୟର ଉନ୍ନତି କରିଥିବା କାରଣରୁ ତାଙ୍କୁ ପୁରସ୍କାର ଦିଆଯାଇଥାଏ । କିନ୍ତୁ ତାହା ଏପରି ନିମ୍ନସ୍ତରକୁ, ରୁଚିହୀନ ଅବସ୍ଥାରେ ପହଞ୍ଚିବ, ଏହା ଆଦୌ ଗ୍ରହଣୀୟ ନୁହେଁ ।

ପୁରସ୍କାର ଉତ୍ସବମାନଙ୍କରେ ଉପାୟନ ଦେବାର ଯେଉଁ ବ୍ୟବସ୍ଥା ଆରମ୍ଭ ହୋଇଛି, ତାହା ବନ୍ଦ ହେବା ଉଚିତ । ଉପାୟନ ହେବାବେଳେ ସେହି ସେହି ବରିଷ୍ଠ ସାହିତ୍ୟିକ ଓ ଶିଳ୍ପୀମାନଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା, ସମ୍ମାନ ଓ ଆନ୍ତରିକତାର ସହ ତାହା ପ୍ରଦାନ କରାଯାଉ । ସଭା ମଞ୍ଚରେ ତାଙ୍କ ଆସନକୁ ନିର୍ଦ୍ଦିଷ୍ଟ କରି ରଖି ତାଙ୍କର ସାମଗ୍ରିକ କୃତୀକୁ ଦର୍ଶକମାନଙ୍କୁ ବିଶଦ ଭାବରେ ଜଣାଇବା ବ୍ୟବସ୍ଥା ହେଉ । ସାହିତ୍ୟ ପାଇଁ ଉପାୟନ ପ୍ରଦାନ କଲେଜ ଡିବେଟ୍‌ରେ ବିଜୟଲାଭ କରି ପୁରସ୍କାର ନେବା ନୁହେଁ । ସାହିତ୍ୟ ଅନୁଷ୍ଠାନମାନଙ୍କର ସାହିତ୍ୟ ଓ ଭାଷା ପ୍ରତି ଆନ୍ତରିକତା ଓ ଅନୁବନ୍ଧତା ହିଁ ଏହି ଉପାୟନ ପ୍ରଦାନ ବ୍ୟବସ୍ଥାକୁ ଅଧିକ ସମୁଜ୍ଜ୍ୱଳ କରିପାରିବ ବୋଲି ଆମର ବିଶ୍ୱାସ । ଆପଣମାନେ ଏ ବିଷୟରେ କ'ଣ ଭାବୁଛନ୍ତି, ତାହା ବ୍ୟକ୍ତ କରିବା ଆଜିର ଆବଶ୍ୟକତା ନୁହେଁ କି ?

●

# ଲେଖକର ସାମାଜିକ ଦାୟିତ୍ୱ

ମେ' ୧୦ ତାରିଖ ଦିନଟି ସମଗ୍ର ମାନବଜାତିର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିବ । ଦୀର୍ଘଦିନର ସଂଗ୍ରାମ ପରେ ଦକ୍ଷିଣ-ଅଫ୍ରିକାରେ ବର୍ଣ୍ଣବୈଷମ୍ୟ ଲୋପ ପାଇଲା ଓ ଡକ୍ଟର ନେଲସନ୍ ମାଣ୍ଡେଲାଙ୍କ ନେତୃତ୍ୱରେ ସରକାର ଗଠନ କରାଗଲା । ସମଗ୍ର ବିଶ୍ୱର ଲୋକମାନେ ଖୁସିହେଲେ, ଆନନ୍ଦିତ ହେଲେ । କାରଣ ବର୍ଣ୍ଣବୈଷମ୍ୟ ପରି ଏକ ଘୃଣିତ ଜଘନ୍ୟ ଜାତିଗତ ବିଦ୍ୱେଷର ଅବସାନ ଘଟିଲା । ମୋ ଭାଷା ମୋ ସାହିତ୍ୟ ପ୍ରସଙ୍ଗରେ ଏ ବିଷୟଟି ଅବତାରଣା କରିବାର ଅର୍ଥ କ'ଣ ? ଯେତେବେଳେ ସମଗ୍ର ମାନବ ଜାତି ଆନନ୍ଦିତ ଓ ଉଦ୍‌ବେଳିତ ହେଲା; ସେତେବେଳେ ସାହିତ୍ୟିକମାନେ, ଶାଳ୍ପିକମାନେ ନୀରବଦ୍ରଷ୍ଟା କାହିଁକି ? ସମଗ୍ର ବିଶ୍ୱରେ ଯାହାଯାହା ଘଟୁଛି, ସମଗ୍ର ଦେଶରେ ଯାହା କିଛି ଘଟୁଛି, ସେଥିପ୍ରତି ଲକ୍ଷ୍ୟ ଥିଲେ ମଧ୍ୟ ଏକ ଉଦାସୀନ ମନୋଭାବ ପୋଷଣ କରିବା ଆମ ଲେଖକ-ମାନଙ୍କର ଅଭ୍ୟାସରେ ପରିଣତ ହୋଇଯାଇଛି ।

ଆମ ଦେଶରେ ଏଇ ଦଶବର୍ଷ ଭିତରେ ଅନେକ କିଛି ଘଟଣା ଘଟିଗଲା । ରାଜନୈତିକ ଉତ୍‌ଥାନ ପତନ ଭିତରେ ଜାତିଗତ ବିଦ୍ୱେଷ ସୃଷ୍ଟି ହୋଇ, ଧାର୍ମିକ ସଂଘର୍ଷ ଘଟିଗଲା । ବିଚ୍ଛିନ୍ନତାବାଦୀ ଓ ବିଭେଦକାମୀ ଶକ୍ତିମାନଙ୍କର ଦେଶର ସଂହତି ଓ ଏକତାକୁ ନଷ୍ଟ କରିବାର ପ୍ରୟାସ, ଅର୍ଥନୈତିକ କ୍ଷେତ୍ରରେ ବ୍ୟାପକ ଦୁର୍ନୀତି ଓ ହେରଫେର ଜାତୀୟ ଜୀବନର ମୂଳଦୁଆକୁ ଦୋହଲାଇ ଦେଲା । ଏହା ସହିତ ବିଶ୍ୱୀକରଣ ନାମରେ ଉଦାର ଅର୍ଥନୀତିର ପ୍ରୟୋଗ ଦେଶର ଲକ୍ଷ ଲକ୍ଷ ଜନଗଣଙ୍କ ଉପରେ ଅମିତ ପ୍ରଭାବ ପକାଇ ତାଁର ମୋଡ଼ି ଓ ଗତିଧାରାକୁ ବଦଳାଇ ଦେବାର ଚେଷ୍ଟା ଅବ୍ୟାହତ ରଖିଛି ।

ଭାରତ ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟରେ, ଯେତେବେଳେ ଇଂରେଜ ଶାସକମାନଙ୍କ ଦ୍ୱାରା ଶାସିତ ହୋଇ ଭାରତୀୟ ଲୋକମାନେ ଅନ୍ଧ ଭାବରେ ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିକୁ ନିଜର ବୋଲି ଆଦରି ନେବାକୁ ଚେଷ୍ଟା କଲେ, ସେତେବେଳେ ରବୀନ୍ଦ୍ରନାଥଙ୍କ ଠାରୁ ଆରମ୍ଭ କରି ବଙ୍କିମ ଚନ୍ଦ୍ର, ପ୍ରେମଚାନ୍ଦ, ଫକୀରମୋହନ, କାଳିନ୍ଦୀ ଚରଣ ଓ ଭଗବତୀଚରଣ ପର୍ଯ୍ୟନ୍ତ ସାହିତ୍ୟ କ୍ଷେତ୍ରରେ ପରୀକ୍ଷା ନିରୀକ୍ଷା କରିବା ସହିତ ଏକ ନୂତନ ଯୁଗର ଶୁଭାରମ୍ଭ କଲେ ଓ ଭାରତୀୟ ଧର୍ମ, ଦର୍ଶନ, ପରମ୍ପରା ଓ ସାହିତ୍ୟକୁ ପାଶ୍ଚାତ୍ୟର ପ୍ରଭାବରୁ ମୁକ୍ତ କରିବାକୁ ଚେଷ୍ଟା କଲେ । ପାଶ୍ଚାତ୍ୟ ଦର୍ଶନ ଓ ସାହିତ୍ୟ ଯେ ଭାରତୀୟ ସାଂସ୍କୃତିକ ଜୀବନରେ ପ୍ରବେଶ

କଲା ନାହିଁ, ତାହା ନୁହେଁ କିନ୍ତୁ ଏହି ପ୍ରବେଶ ଭାରତୀୟ ସାଂସ୍କୃତିକ ଜୀବନକୁ ଅଧିକ ପୁଷ୍ଟ କରିବାରେ ସାହାଯ୍ୟ କଲା । କାରଣ ସେ ସମୟର ଲେଖକମାନଙ୍କ ସମ୍ମୁଖରେ ସାଂସ୍କୃତିକ ଜୀବନର ଅବକ୍ଷୟକୁ ରୋକିବା ପ୍ରଧାନ କର୍ତ୍ତବ୍ୟ ହୋଇଥିଲା । ସେମାନେ ଯାହାକିଛି ଘଟୁଛି, ସେଥିପ୍ରତି ସଚେତନ ହୋଇ କେବଳ କଲମକୁ ତୀବ୍ରଗତିରେ ଚଳେଇଲେ ନୁହେଁ, ଜାତିର ଧମନୀରେ ଆତ୍ମବିଶ୍ୱାସ ସୃଷ୍ଟି କରିବାକୁ ଦୃଢ଼ସଂକଳ୍ପ ହେଲେ । ସେମାନଙ୍କ ନିକଟରେ ଭାଷା ସାହିତ୍ୟ ଜାତିଗଠନ ପାଇଁ ସାଂସ୍କୃତିକ ନବଜାଗରଣ ନିମିତ୍ତ କେବଳ ମାଧ୍ୟମ ନହୋଇ ଏକ ଉନ୍ନତର ଜୀବନର ପ୍ରତୀକ ଭାବେ ଦୃଶ୍ୟମାନ ହେଲା ।

ସମ୍ପ୍ରତି ଯେତେବେଳେ ସମଗ୍ର ବିଶ୍ୱରେ ପରିବର୍ତ୍ତନ ହେଉଛି ଏବଂ ଏହି ପରିବର୍ତ୍ତନର ପ୍ରଭାବ ଆମ ସାଂସ୍କୃତିକ ଜୀବନକୁ ଅବକ୍ଷୟ ଆଡ଼କୁ ଟାଣିନେବାକୁ ଚେଷ୍ଟା କରୁଛି ; ସେତେବେଳେ ଆମ ଲେଖକମାନେ, ସାହିତ୍ୟିକମାନେ ନିର୍ବାକ ହୋଇ ପଡ଼ିରହିଛନ୍ତି । ଏହାଠାରୁ ଦୁଃଖ ଓ କ୍ଷୋଭର ବିଷୟ ଆଉ କ'ଣ ହୋଇପାରେ ? ସାହିତ୍ୟ କେବଳ ସୌଖୀନ ଜୀବନ ପାଇଁ, ପୁରସ୍କାର ପାଇବା ପାଇଁ ଲେଖାଯାଉଛି । ଏଥିରେ ମାନବିକ ସ୍ପନ୍ଦନ ନାହିଁ, ମୂଲ୍ୟବୋଧ ପ୍ରତି ଗୁରୁତ୍ୱ ନାହିଁ, ସାଂସ୍କୃତିକ ଅବକ୍ଷୟକୁ ସଶକ୍ତ ରୋକିବାର ଭୂମିକା ନାହିଁ । ଏହା ଯେ ନିର୍ଘାଟ ସତ୍ୟ, ଏ କଥାକୁ କେହି ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ଏପରି ଏକ ପୃଷ୍ଠଭୂମିରେ କେମିତି ଆମେ ଆମ ଭାଷା ସାହିତ୍ୟ ପାଇଁ ଗର୍ବ କରିବା ? ଆମ ଲେଖକର ସ୍ୱାଭିମାନ ପାଇଁ ଆତ୍ମବଡ଼ିମା କରିବା ? ଆମ ଭିତରେ ସେହି ସ୍ୱାଭିମାନ ଅଛି କି ? ଯଦି ଥାଆନ୍ତା, ତେବେ ଦେଶରେ ଯାହା ଯାହା ଘଟୁଛି, ଯାହା ସମଗ୍ର ମାନବଜାତିକୁ ଏକ ସନ୍ତୁଳନ ଅବସ୍ଥାକୁ ନେଇଯାଉଛି, ସେଥିପାଇଁ ପ୍ରତିକ୍ରିୟା ସୃଷ୍ଟି ହୁଅନ୍ତା ନାହିଁ ? ନା, ଆମର କୌଣସି କଥାରେ ପ୍ରତିକ୍ରିୟା ନାହିଁ । ପ୍ରତିକ୍ରିୟା ପ୍ରକାଶ କରିବା ପାଇଁ ଆମ ନିକଟରେ ଇଚ୍ଛାଶକ୍ତିର ଅଭାବ । ଆମ ଲେଖକମାନଙ୍କ ମଧ୍ୟରେ ସେହି ପରମୁଖାପେକ୍ଷିତା, ସେହି ଦାସସୁଲଭ ଦୁର୍ବଳତା । କାରଣ ଏଠାରେ ଲେଖକଟି ବ୍ୟୁରୋକ୍ରାଟ, ଅଧ୍ୟାପକ, ପଦସ୍ଥ ସରକାରୀ କର୍ମଚାରୀ ଇତ୍ୟାଦି । ତେଣୁ ତୀବ୍ର ଭାବରେ ପ୍ରତିକ୍ରିୟା ପ୍ରକାଶ ନ ପାଇବା ସ୍ୱାଭାବିକ । ଆମେ କେବଳ ଆତ୍ମଗର୍ବରେ ଆହ୍ଲାଦିତ ଓ ଆନନ୍ଦିତ ଯେ, ଆମେ ସମସ୍ତଙ୍କଠାରୁ ଉଚ୍ଚରେ ; କାରଣ ବିଭିନ୍ନ ପୁରସ୍କାର ଦ୍ୱାରା ସମ୍ମାନିତ । କୌଣସି ପୁରସ୍କାର ସାହିତ୍ୟିକ ସ୍ୱାଭିମାନ ସୃଷ୍ଟି କରେନା ; ଜାତି ଭିତରେ ଆତ୍ମବିଶ୍ୱାସ ଜାଗ୍ରତ କରାଏନା । ଆଜିର କର୍ତ୍ତବ୍ୟ ଆମ ଭିତରେ ଦାସସୁଲଭ ଦୁର୍ବଳତାକୁ ଦୂର କରି ଆତ୍ମବିଶ୍ୱାସ ସୃଷ୍ଟି କରିବା ଆମ ଭାଷା ଓ ସାହିତ୍ୟ ମାଧ୍ୟମରେ । ଏ ସମ୍ପର୍କରେ ଲେଖକଙ୍କର ସଚେତନତା ଆଜିର ଆବଶ୍ୟକତା ନୁହେଁ କି ?

●

# ଲେଖକର ସାମଗ୍ରିକ ବ୍ୟକ୍ତିତ୍ୱ

ଓଡ଼ିଆ ଭାଷା ସାହିତ୍ୟର ଜନକଭାବେ ଆମେ ଏପର୍ଯ୍ୟନ୍ତ ଫକୀରମୋହନଙ୍କୁ ଗ୍ରହଣ କରିଛୁ । ସେ ବ୍ୟାପକଭାବରେ ଆମ ନିକଟରେ ପରିଚିତ । ଫକୀରମୋହନଙ୍କୁ ଛାଡ଼ିଦେଇ ଓଡ଼ିଆ ଭାଷା ସାହିତ୍ୟ ସମ୍ପର୍କରେ କଳ୍ପନା କରାଯାଇପାରିବ ନାହିଁ । ଠିକ୍ ସେହିପରି ଆଧୁନିକ ଓଡ଼ିଆ କବିତାର ପଥପ୍ରଦର୍ଶକ ଭାବେ, ଜଣେ ବିଶିଷ୍ଟ କବି ଭାବେ ରମାକାନ୍ତ ରଥ ବେଶ୍ ପ୍ରତିଷ୍ଠା, ଯଶଲାଭ କରିଛନ୍ତି । ରମାକାନ୍ତଙ୍କୁ ଛାଡ଼ି ଓଡ଼ିଆ ଆଧୁନିକ କାବ୍ୟ-ଜଗତ ସମ୍ପର୍କରେ ଆଲୋଚନା ହୋଇପାରେନା । କବି ରମାକାନ୍ତ ବହୁତ ପୁରସ୍କାର ମଧ୍ୟ ଲାଭ କରିଛନ୍ତି ଓ ପ୍ରଥମ ସରସ୍ୱତୀ ବିଜେତା ଭାବେ ସମଗ୍ର ଭାରତବର୍ଷରେ ସୁଖ୍ୟାତି ପାଇଛନ୍ତି । ସମ୍ପ୍ରତି ଉଭୟ ଫକୀରମୋହନ ଓ ରମାକାନ୍ତଙ୍କୁ ନେଇ କିଛି ସାହିତ୍ୟିକ ଉଷ୍ମତା ସୃଷ୍ଟି ହୋଇଛି । ଫକୀରମୋହନଙ୍କର ଜୀବିକା ଥିଲା ଦେଓ୍ୱାନ୍‌ଗିରି କରିବା, ଅର୍ଥାତ୍ ରାଜାଙ୍କୁ ରାଜ୍ୟ ଶାସନରେ ସାହାଯ୍ୟ କରିବା । ଏହା ଥିଲା ତାଙ୍କର ବୃତ୍ତି ; ସେଥିରୁ ସେ ନିଜର ତଥା ନିଜ ପରିବାରର ପେଟ ପୋଷୁଥିଲେ । ଫକୀରମୋହନ ଦେଓ୍ୱାନ୍ ଥିବା ସମୟରେ ଧରଣୀଧର ଭୂୟାଁଙ୍କ ପରି ଜଣେ ବିପ୍ଳବୀଙ୍କୁ ଧରାଇଦେଇ କଠିନ ଦଣ୍ଡ ଦେଇଥିଲେ । ସେଥିପାଇଁ ସେ ହେଲେ ଦେଶଦ୍ରୋହୀ ଓ ଖଳନାୟକ ବୋଲି ରାଜଧାନୀର ଏକ ସୁଧୀସଭାରେ ମନ୍ତ୍ରୀ, ସ୍ୱାଧୀନତା ସଂଗ୍ରାମୀ ଓ ଇତିହାସର ପ୍ରଫେସର୍ କହିଛନ୍ତି । ଏଥିପାଇଁ 'ପ୍ରଗତିବାଦୀ'ର ସମ୍ପାଦକୀୟ ଓ 'ସମ୍ବାଦ'ର ସମ୍ପାଦକୀୟ ନିଜ ନିଜର ମତବ୍ୟକ୍ତ କରିଛନ୍ତି । ଏହା ଏକ 'ଅକ୍ଷମଣୀୟ ଅପରାଧ' ବୋଲି 'ସମ୍ବାଦ' ବର୍ଣ୍ଣନା କରିବେଳେ 'ପ୍ରଗତିବାଦୀ' "ଫକୀରମୋହନ ଏମାନଙ୍କୁ କ୍ଷମା ଦିଅନ୍ତୁ" ବୋଲି କହିଛନ୍ତି ।

ଠିକ୍ ସେହି ମର୍ମରେ କବି ରମାକାନ୍ତ ମଧ୍ୟ ସମାଲୋଚନାର ବଳୟ ମଧ୍ୟରେ ପ୍ରବେଶ କରିଛନ୍ତି । କବି ରମାକାନ୍ତ ଜୀବିକା ବା ବୃତ୍ତିରେ ଥିଲେ, ଜଣେ ବ୍ୟୁରୋକ୍ରାଟ୍ ଓ ମୁଖ୍ୟମନ୍ତ୍ରୀଙ୍କର ପ୍ରମୁଖ ସଚିବ ଭାବେ ତାଙ୍କର କେତେକ କାର୍ଯ୍ୟ ଭଦ୍ରଜନୋଚିତ ନୁହେଁ ଏବଂ କ୍ଷମତାର ଦୁରୁପଯୋଗ ବୋଲି କୁହାଯାଇଛି । ଶ୍ରୀ ରମାକାନ୍ତ ରଥ ଏହାକୁ ଖଣ୍ଡନ କରି ନିଜର ବକ୍ତବ୍ୟ ଦେଇଛନ୍ତି ।

ଉଭୟ ଫକୀରମୋହନ ଓ ରମାକାନ୍ତ ନିଜ ନିଜର ବୃତ୍ତିକୁ ରକ୍ଷା କରିବା ପାଇଁ ହେଉ ଅଥବା ଶାସକଙ୍କୁ ଖୁସି କରି ନିଜ ଆସନକୁ ଅଧିକ ଗୁରୁତ୍ୱ ଦେବା ପାଇଁ

ବା ସୁଦୃଢ଼ କରିବା ପାଇଁ କେତେକ ଗର୍ହିତପୂର୍ଣ୍ଣ କାର୍ଯ୍ୟ କରିଛନ୍ତି ବୋଲି ଉଭୟଙ୍କୁ ସମାଲୋଚନା କରାଯାଇଛି । ବ୍ୟୁରୋକ୍ରାଟ୍‌ମାନେ ଯେ ସମାଲୋଚନାର ଊର୍ଦ୍ଧ୍ୱରେ ନୁହନ୍ତି, ଏକଥା ସମସ୍ତେ ଜାଣିବା ଉଚିତ । କିନ୍ତୁ ଇତିହାସରେ କେତେ ଦେଓ୍ୱାନ୍‌ଙ୍କୁ ବା କେତେ ମନ୍ତ୍ରୀ, ପ୍ରମୁଖ ସଚିବ ବା ସଚିବଙ୍କୁ କିଏ ମନେ ରଖିଛି ? ଯେଉଁମାନେ ନିଜ ନିଜର ବୃତ୍ତି କରି ଜୀବନ ଜୀବିକା ନିର୍ବାହ କରନ୍ତି, ସେମାନଙ୍କୁ କେହି ମନେ-ରଖନ୍ତି ନାହିଁ । ଭବିଷ୍ୟତରେ ମଧ୍ୟ ରଖିବେ ନାହିଁ । କିନ୍ତୁ ଯେଉଁମାନେ ବୃତ୍ତିରୁ ଭିନ୍ନ ହୋଇ, ଅଲଗା ହୋଇ ସମାଜ ପାଇଁ, ରାଷ୍ଟ୍ର ପାଇଁ କିଛି କରିଥାନ୍ତି, ସେମାନେ ହିଁ ମନେପଡ଼ନ୍ତି । ଫକୀରମୋହନଙ୍କୁ ଆମେ ଓଡ଼ିଆ ଭାଷା ସାହିତ୍ୟର, ଜାତିର ଜନକ ଭାବରେ ଜାଣୁ । ତାଙ୍କ ବ୍ୟତୀତ ଓଡ଼ିଆ ଭାଷା ନ ଥାନ୍ତା, ଏମିତି ନ ଥାନ୍ତା ବା ଭାଷାଭିତ୍ତିକ ଏ ରାଜ୍ୟ ଗଢ଼ାଯାଇ ନ ଥାନ୍ତା । ଠିକ୍ ସେହିପରି ରମାକାନ୍ତ ଯଦି କବିଟିଏ ହୋଇ ଯଶ ଓ ପ୍ରତିଷ୍ଠାଲାଭ କରି ନ ଥାନ୍ତେ, ତେବେ ବ୍ୟୁରୋକ୍ରାଟ୍ ରମାକାନ୍ତଙ୍କୁ ମଧ୍ୟ କେହି ମନେରଖନ୍ତେ ନାହିଁ । ତେଣୁ ମନରେ ପ୍ରଶ୍ନ ଆସୁଛି, ଯଦି କେହି ବ୍ୟକ୍ତି ନିଜର ଗୁଣଗତ ଉତ୍କର୍ଷକୁ ପ୍ରମାଣ କରି ସମାଜ ଓ ରାଷ୍ଟ୍ର ପାଇଁ କିଛି କରେ ଓ ତାହା ଦ୍ୱାରା ରାଷ୍ଟ୍ର ବା ସମାଜ ତାକୁ ନିଜ ହୃଦୟର ମଣିଷ ଭାବରେ ବିଶ୍ୱାସ କରେ, ସେଠାରେ ତାଙ୍କର ବୃତ୍ତିଗତ ଦୋଷତ୍ରୁଟି ବା ଚରିତ୍ରଗତ ଦୋଷତ୍ରୁଟିକୁ ଅକ୍ଷମଣୀୟ ଅପରାଧଭାବେ ଧରାଯିବ କି ? ଏବଂ ସେଥିପାଇଁ ତାଙ୍କୁ ସର୍ବସାଧାରଣରେ ନିନ୍ଦିତ କରିବାର ଆବଶ୍ୟକତା ରହିଛି କି? ଏ ପ୍ରଶ୍ନର ଉତ୍ତର ଆମେ ଯେତିକି ସହଜ ବୋଲି ଭାବିବା, ସେତିକି କଷ୍ଟ ମଧ୍ୟ ଜଣାପଡ଼ିବ ।

କେତେକ ସାହିତ୍ୟିକ ବନ୍ଧୁଙ୍କ ସହିତ ଆଲୋଚନା କଲି । ସେମାନେ ସମସ୍ତେ ଭିନ୍ନ ଭିନ୍ନ ମତ ଦେଲେ । ବୃତ୍ତିଗତ ଅପରାଧ ପାଇଁ ଦଣ୍ଡନୀୟ ହେବା ଉଚିତ ବୋଲି କହିଲେ । ତାହା ଯଦି ବ୍ୟକ୍ତିର ବ୍ୟକ୍ତିତ୍ୱକୁ ମାପିବା ପାଇଁ ମାପକାଠି ହୁଏ, ତେବେ ଅଧୁନା ସମସ୍ତ ସାହିତ୍ୟିକମାନେ ଦ୍ୱିଧାବିଭକ୍ତ ବ୍ୟକ୍ତିବିଶେଷ ନୁହନ୍ତି କି ? ପ୍ରତ୍ୟେକ ବ୍ୟକ୍ତିର ଦୁଇଗୋଟି ବ୍ୟକ୍ତିତ୍ୱ ରହିଛି । ତା'ର ନିଜସ୍ୱ ବ୍ୟକ୍ତିତ୍ୱ, ତା'ର ସାମଗ୍ରିକ ବ୍ୟକ୍ତିତ୍ୱ ନିକଟରେ ତୁଚ୍ଛ ହୋଇଯାଏ, ଏହା ସତ୍ୟ ନୁହେଁ କି ? ତାହା ଯଦି ହୋଇ ନ ଥାନ୍ତା, ତେବେ ପୃଥିବୀରେ ଯେତେ ଯେତେ ମହାମନିଷୀ ଜନ୍ମ ନେଇଛନ୍ତି, ଯେତେ ଯେତେ ବିଶିଷ୍ଟ ଶିଳ୍ପୀ, ସାହିତ୍ୟିକ ଅଛିନ୍ତି ସମସ୍ତେ ଏହି ବୃତ୍ତିଗତ ବା ବ୍ୟକ୍ତିଗତ ଚାରିତ୍ରିକ ଦୋଷରେ ଦୋଷମୁକ୍ତ ହୋଇ କେବେହେଲେ ସମାଜଠାରୁ ସମ୍ମାନ ପାଇବାକୁ ହକ୍‌ଦାର ହୋଇ ନ ଥାନ୍ତେ ।

ଏହି ପ୍ରକାର ଯେଉଁ ଦୁଇଟି ମତ ଉପସ୍ଥାପନ କରାଗଲା, ତାହା ହୁଏତ ବିଚାର ଓ ଆଲୋଚନା ଦାବୀ କରିପାରେ । କିନ୍ତୁ ଜଣଙ୍କର ସାମଗ୍ରିକ ବ୍ୟକ୍ତିତ୍ୱ ଏବଂ

ବିଶେଷକରି ସମାଜ ପ୍ରତି ଦାନ ଯୋଗୁ ସେ ବ୍ୟକ୍ତିବିଶେଷ ଆମ ଦୃଷ୍ଟିରେ ସଦାସର୍ବଦା ଜାଜ୍ୱଲ୍ୟମାନ । ଫକୀରମୋହନ ଆମ ଦୃଷ୍ଟିରେ ଅମର ଔପନ୍ୟାସିକ । ଆମ ଭାଷା-ସାହିତ୍ୟର ଜନକ । ଆମ କଥାଜଗତର କଥାସମ୍ରାଟ୍ । ତାଙ୍କର ଅନ୍ୟ ଯେକୌଣସି ବ୍ୟକ୍ତିତ୍ୱ ଆମ ଦୃଷ୍ଟିରେ ଗୌଣ ଓ ସେହି ଗୌଣ ଭୂମିକାକୁ ସମାଲୋଚନା କରିବା ଆମ ଦୃଷ୍ଟିରେ ଗର୍ହିତ ।

ରମାକାନ୍ତ ଆମ ଦୃଷ୍ଟିରେ ଯଶସ୍ୱୀ କବି । ଇତିହାସର ଅଳିଆ ଟୋକେଇରେ କେତେ ବ୍ୟୁରୋକ୍ରାଟ୍ ଗଡ଼ିପଡ଼ି ଯାଇଛନ୍ତି ଓ ଯିବେ, ତାଙ୍କୁ କେହି ମନେରଖିବେ ନାହିଁ ବା ରଖିନାହାନ୍ତି । କିନ୍ତୁ ଆଧୁନିକ କାବ୍ୟଜଗତକୁ ସ୍ୱକୀୟ ଧାରାରେ ସମୃଦ୍ଧ କରିଚାଲିଥିବା କବି ରମାକାନ୍ତ ରଥ ଆଧୁନିକ ପୀଢ଼ିର ପ୍ରେରଣାର ଉତ୍ସ ଭାବରେ ଆମ ଦୃଷ୍ଟିରେ ପରିଚିତ । ତାଙ୍କର ଅନ୍ୟ ଭୂମିକା ଗୌଣ । ଏହି ଗୌଣ ଭୂମିକାକୁ ଉଦ୍ଧାର କରି କବି ରମାକାନ୍ତଙ୍କର କାଳଜୟୀ ପ୍ରତିଭାକୁ ଲୁଚ୍ଛାଇପାରିବ ନାହିଁ ।

ସାହିତ୍ୟର ସ୍ରଷ୍ଟାମାନେ ଏ ବିଷୟରେ ଟିକିଏ ଭାବିବା ଆଜିର ଆବଶ୍ୟକତା ନୁହେଁ କି ?



# ଓଡ଼ିଶାର ଲେଖକ

ମୋର ଜଣେ ପ୍ରିୟ ବନ୍ଧୁ 'ପ୍ରଗତିବାଦୀ'ରେ ଏହି ସ୍ତମ୍ଭକୁ ପଢ଼ି ମତଦେଲେ, "ଭଲ ଲାଗୁଛି; କିନ୍ତୁ ଆହୁରି ଶାଣିତ ହେବା ଦରକାର।" କଥାଟି ସତ। ତାହା ମୋ ମନକୁ ଛୁଇଁଲା। ସତ କହିବି ବୋଲି ଯେତେବେଳେ କହିଛି, ଅପ୍ରିୟ ହେଲେ ମଧ୍ୟ କହିବି। ସାହିତ୍ୟରେ ଅପ୍ରିୟ କଥା କେଉଁଠୁ ଆସିଲା ? ଅପ୍ରିୟ ନୁହେଁ; ଯାହା ଘଟୁଛି, ଯାହା ଆମ ଭାଷା ସାହିତ୍ୟର ପରିପନ୍ଥୀ, ତାହାହିଁ କହିବାକୁ ଭାବୁଛି। ଏହା କହିବାର ଉଦ୍ଦେଶ୍ୟ କାହାକୁ ଗାଳିଦେବା ନୁହେଁ ବା କାହା ପ୍ରତି ଅସୂୟା ପ୍ରକାଶ କରିବା ନୁହେଁ। ଯାହା ଯାହା ଘଟୁଛି, ତାକୁହିଁ ନିଛକ ଭାବରେ କହିବା।

ଓଡ଼ିଶାରେ ଲେଖକ କେଉଁମାନେ ପ୍ରଥମେ ଏ ପ୍ରଶ୍ନ ମୋ ମନକୁ ଆସେ। ଯେଉଁମାନଙ୍କର ସାରସ୍ୱତ ଭଣ୍ଡାର ଅମାପ ପରିମାଣରେ ବୃଦ୍ଧି, ସଂଖ୍ୟାଦୃଷ୍ଟିରେ ଯେଉଁମାନେ ସମୁଜ୍ଜ୍ୱଳ, ସେମାନଙ୍କୁ ପ୍ରଥମ ଧାଡ଼ିର ଲେଖକ ବୋଲି ଗଣ୍ୟ କରାଯାଏ ଏବଂ ଏହି ମାନ୍ୟତାପ୍ରାପ୍ତ ସାହିତ୍ୟିକମାନେ ପୁରସ୍କାରମାନ ପାଇଥା'ନ୍ତି। ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେମୀ, ଶାରଳା ପୁରସ୍କାର, ଉତ୍କଳ ସମ୍ମାନ, ଓଡ଼ିଶା ଫଣ୍ଡ ପୁରସ୍କାରଠାରୁ ଆରମ୍ଭ କରି ଯେତେ ଯେତେ ପୁରସ୍କାର ଅଛି ତାହା ପାଇଥାନ୍ତି। ସେମାନେ ସଭାସମିତି ମଣ୍ଡନ କରି ଓଡ଼ିଆ ସାହିତ୍ୟ ସମ୍ପର୍କରେ ଭାଷଣ ଦିଅନ୍ତି ଏବଂ ଏଇ ମାଟିର ବାସ୍ନା ତାଙ୍କ ଲେଖାର ମୂଳସ୍ୱର ବୋଲି କହିବାକୁ ଭୁଲନ୍ତି ନାହିଁ। ବିଭିନ୍ନ ପତ୍ରପତ୍ରିକାରେ ସେମାନଙ୍କ ଲେଖାର ଆଲୋଚନା, ସମାଲୋଚନା ହୁଏ। ପି. ଏଚ. ଡ଼ି. ଥେସିସ୍ ଲେଖାଯାଏ। ଯେଉଁ ମୁଷ୍ଟିମେୟ କେତେଜଣ ଅଧ୍ୟାପକ ଆଲୋଚନା ଓ ସମାଲୋଚନା କରନ୍ତି, ସେମାନେ ଗଳଦ୍‌ଘର୍ମ ହୋଇ ତାଙ୍କ ବହିର ତର୍ଜମା କରନ୍ତି।

ଓଡ଼ିଶାର ସାହିତ୍ୟ ଆକାଶରେ କେବଳ କେତେଗୁଡ଼ିଏ ଉଜ୍ଜ୍ୱଳ ତାରକା ଖୁବ୍ ଜୋରରେ ଜଳୁଥିବାବେଳେ, ଅନ୍ୟଗୁଡ଼ିକ ଧକ୍‌ଧକ୍ କରନ୍ତି। ଢ଼ିବ ଆଲୁଅଠାରୁ ସ୍ୱଳ୍ପ ଆଲୁଅ ସେମାନଙ୍କଠାରୁ ବାହାରୁଥାଏ। ଏ ଅବସ୍ଥା କାହିଁକି ? ସତରେ କ'ଣ କେତେଗୁଡ଼ିଏ ଉଜ୍ଜ୍ୱଳ ତାରକା ଏବଂ ଅନ୍ୟମାନେ ନିଷ୍ପ୍ରଭ। ଯେତେବେଳେ ନୂତନ ପିଢ଼ିର ଲେଖକମାନଙ୍କ କଥା ବିଚାର କରାଯାଏ, ସେମାନଙ୍କୁ ପ୍ରୋତ୍ସାହନ ଦେଇ ଗଢ଼ି ତୋଳିବାର ଯେଉଁ ପ୍ରଚେଷ୍ଟା ହେବା ଆବଶ୍ୟକ ତାହା ନାହିଁ। ଥରେ

ଜଣେ ବିଶିଷ୍ଟ ଗାଳ୍ପିକ କ୍ଷୋଭ ପ୍ରକାଶ କରି କହିଲେ ଓଡ଼ିଆ ସାହିତ୍ୟ କେତେକ ମୁଷ୍ଟିମେୟ ପ୍ରଶାସନିକ ଅଧିକାରୀଙ୍କ କବଳରେ କବଳିତ । ସେମାନେ କଳେବଳେ କୌଶଳେ ସାହିତ୍ୟକୁ ନିଜ ନିଜ ନିୟନ୍ତ୍ରଣରେ ରଖିବାକୁ ଚେଷ୍ଟିତ । ଏମାନଙ୍କୁ ସାହାଯ୍ୟ କରୁଛନ୍ତି, ମୁଷ୍ଟିମେୟ ଅଧ୍ୟାପକ, ଆଲୋଚକ । ଯଦି ଏହି ସ୍ଥିତି ରହେ, ତେବେ ଓଡ଼ିଆ ସାହିତ୍ୟ ପାଇଁ ଏହା ଦୁର୍ଭାଗ୍ୟ ।

ଏ କଥାଟି କେତେଦୂର ସତ୍ୟ, ତାହା ପାଠକମାନେ ବିଚାର କରିବେ । ପ୍ରକୃତ ପକ୍ଷେ ତରୁଣ ଓ ନବୀନ ଲେଖକମାନଙ୍କ ପ୍ରତି ଯେତେଦୂର ଦୃଷ୍ଟି ଦେବା କଥା ଦିଆଯାଉନାହିଁ । ସେମାନଙ୍କର ରଚନାକୁ ପଢ଼ି ଆଲୋଚନା ଓ ସମାଲୋଚନା ପରିସର ମଧ୍ୟକୁ ଅଣାଯାଉନି । ସେମାନେ ଢିକ୍ ଢିକ୍ ହୋଇ ଜଳୁଥିବା ତାରା । କେତେବେଳେ ହୁଏତ ଲିଭି ଯାଇପାରନ୍ତି । କୌଣସି ପ୍ରତିଷ୍ଠିତ ଲେଖକ, ସେ କବି, ଗାଳ୍ପିକ ବା ଔପନ୍ୟାସିକ ହୁଅନ୍ତୁ, ତରୁଣମାନଙ୍କର ଲେଖା ପଢ଼ି ସେମାନଙ୍କୁ ସନ୍ଧମଞ୍ଚରୁ ପ୍ରଶଂସା କରିବା ବା ପ୍ରଶଂସାପୂର୍ଣ୍ଣ ଆଲୋଚନା କରିବା କିମ୍ବା କଡ଼ା ଭାଷାରେ ସମାଲୋଚନା କରିବା, ତାହା ଦେଖାଯାଉନାହିଁ । ସମାଲୋଚକମାନଙ୍କ ଲେଖାରେ ସେହି ମୁଷ୍ଟିମେୟ ଉଜ୍ଜ୍ୱଳ ତାରକାମାନେ ବାରମ୍ବାର ଦେଖାଦେଉଛନ୍ତି । ଫଳରେ ନୂତନ ଲେଖକଟିର ଆଲୋଚନା ତ ଦୂରେ ଥାଉ, ତା'ର ପରିଚିତ ମଧ୍ୟ ହେଉନାହିଁ । ଏହା ଓଡ଼ିଆ ସାହିତ୍ୟ ପାଇଁ ଶୁଭ ସୂଚନା ନୁହେଁ । ନବୀନ ତରୁଣମାନେ ପ୍ରବୀଣ-ମାନଙ୍କର ସ୍ଥାନ ପୂରଣ କରିବେ । କିନ୍ତୁ ପ୍ରବୀଣମାନେ ଯଦି ନୂତନ ପିଢ଼ୀ ପ୍ରତି ଗୁରୁତ୍ୱ ଦେଇ ସେମାନଙ୍କର ସାହିତ୍ୟ ରଚନା ପ୍ରତି ଧ୍ୟାନ ନ ଦିଅନ୍ତି, ତେବେ ସାରସ୍ୱତ ସୃଷ୍ଟି ସମ୍ଭାରର ଗୁଣାତ୍ମକ ବିକାଶ ସମ୍ଭବ ହେବ କି ? ଯଦି କେହି ପ୍ରବୀଣ ସାହିତ୍ୟିକଙ୍କୁ ପ୍ରଶ୍ନ କରେ, "ଆପଣ କେଉଁ କେଉଁ ନୂତନ ବହି ନୂତନ ପିଢ଼ୀ ଲେଖକଙ୍କର ପଢ଼ିଛନ୍ତି ?" ସେ ହୁଏତ ଦୁଇ/ତିନି ଜଣଙ୍କର ନାଁ କହିପାରନ୍ତି ; ମାତ୍ର ସେହି ଦୁଇ/ତିନି ଜଣଙ୍କର ସମସ୍ତ ଲେଖା ପଢ଼ିଥିବେ କି ନାହିଁ ସନ୍ଦେହ । ସଭା ସମିତିମାନଙ୍କରେ ଦେଖାହେବା ବେଳେ ନମସ୍କାର ପ୍ରତିବଦଳରେ ସେମାନେ, "କପରି ଲେଖୁଛ ? କ'ଣ ଏବେ ଲେଖୁଛ ? ତୁମ ଲେଖାରେ ଏଇ ଏଇ ଅଭାବ ରହୁଛି" ବୋଲି ମଧ୍ୟ କହୁଥିବାର ବା ପଚାରୁଥିବାର ଦେଖାଯାଉନାହିଁ । ସାହିତ୍ୟର ଯେଉଁ ବ୍ୟାପକ ପିରାମିଡ୍ ଗଠନ କରାହେଉଛି, ସେହି ପିରାମିଡ୍ ଗଠନରେ ସମସ୍ତେ ନିଜ ନିଜ ଭୂମିକା ସମ୍ପାଦନ କଲାବେଳେ କ୍ଷୁଦ୍ର କ୍ଷୁଦ୍ର ଭୂମିକା ସମ୍ପାଦନ କରୁଥିବା ଲେଖକମାନଙ୍କୁ ଗୌଣ ବୋଲି ଭାବି ସେମାନଙ୍କୁ ଆଲୋଚନା, ସମାଲୋଚନା କରିବାର କୌଣସି ଯୁକ୍ତି ନାହିଁ । ଏହା ହୀନମନ୍ୟତା । ଏହା ତରୁଣମାନଙ୍କୁ ହେୟ କରି ଦେଖିବାର ପ୍ରଚେଷ୍ଟା । ସମସ୍ତେ ହୁଏତ ସମାନ ଆସନରେ ବସି ନ ପାରନ୍ତି; କିନ୍ତୁ ସମସ୍ତଙ୍କୁ ବିଚାର କରି

ଅପନ ଦେବାର ଆବଶ୍ୟକତା ରହିଛି । ଏହି କାର୍ଯ୍ୟଟିକୁ ସମ୍ପାଦନ କରିବାର ଦାୟିତ୍ୱ ପ୍ରବୀଣ ଲେଖକ ଓ ଆଲୋଚକମାନଙ୍କର ହେବା ଉଚିତ ନୁହେଁ କି ? ଏ ପର୍ଯ୍ୟନ୍ତ ହୋଇନାହିଁ । ଆଗାମୀ ଦିନରେ ଏହା ଉପରେ ଯଦି ଗୁରୁତ୍ୱ ଦିଆଯାଏ, ତେବେ ଓଡ଼ିଆ ସାହିତ୍ୟର ବିକାଶ ଲାଭ କରିବ ଓ ଦିନ୍ ଦିକ୍ ହୋଇ ଜଳୁଥିବା କ୍ଷୁଦ୍ର କ୍ଷୁଦ୍ର ତାରାମାନେ ସମୁଜ୍ଜ୍ୱଳ ହୋଇ ଉଠିବାକୁ ଚେଷ୍ଟିତ ହେବେ । ଓଡ଼ିଆ ସାହିତ୍ୟ ଆକାଶରେ କେବଳ କେତେକ ମୁଷ୍ଟିମେୟ ଉଜ୍ଜ୍ୱଳ ତାରକା ଶୋଭି ନ ପାରି, ସମୁଦାୟ ଆକାଶଟି ଉଜ୍ଜ୍ୱଳ ତାରକାମାନଙ୍କ ଦ୍ୱାରା ସୁଶୋଭିତ ହେବ । ଏ ବିଷୟରେ ଟିକିଏ ଭାବିବା ଆଜିର କର୍ତ୍ତବ୍ୟ ନୁହେଁ କି ?



# ଓଡ଼ିଆ ଉପନ୍ୟାସ

ଯେଉଁମାନେ ସାହିତ୍ୟ ସୃଷ୍ଟି କାର୍ଯ୍ୟରେ ଲିପ୍ତ ରହିଛନ୍ତି, ସେମାନେ ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟରଚନା ଓ ଉପନ୍ୟାସ ଇତ୍ୟାଦି ବିଭିନ୍ନ ସମୟରେ ଲେଖିଥାନ୍ତି । ଜଣେ କେବଳ ଉପନ୍ୟାସ ଲେଖେନି, ସେ ମଧ୍ୟ ଗପ ଲେଖେ । ଯାହା ଯେତେବେଳେ ମନକୁ ଆସିଲା, ଯେଉଁପରି ଭାବରେ ମନ କୌଣସି ଭାବକୁ ଗ୍ରହଣକଲା, ତାହା ସେପରି ପ୍ରସ୍ଫୁଟିତ ହେଲା । କିନ୍ତୁ ଓଡ଼ିଆ ସାହିତ୍ୟରେ ଉପନ୍ୟାସ ସଂଖ୍ୟା ସୀମିତ । ପ୍ରତ୍ୟେକ ବର୍ଷ ବହୁତ କମ୍ ଉପନ୍ୟାସ ଲେଖା ହେଉଛି । ଏହାର କାରଣ ସମ୍ପର୍କରେ ଅନୁଧ୍ୟାନ ଓ ବିଚାର ବିମର୍ଷ ହେବାର ଆବଶ୍ୟକତା ରହିଛି । ଏଇ ଅଳ୍ପ କେତେ ଦିନ ବ୍ୟବଧାନରେ ଓଡ଼ିଆ ସାହିତ୍ୟର ସୁନାମଧନ୍ୟ ଔପନ୍ୟାସିକ କାହ୍ନୁଚରଣଙ୍କର ଦେହାନ୍ତ ହୋଇଯାଇଛି । କାହ୍ନୁଚରଣ ଓଡ଼ିଆ ସାହିତ୍ୟକୁ ଅନେକ ଅମୂଲ୍ୟ ଉପନ୍ୟାସ ଦେଇଯାଇଛନ୍ତି । ଗୋପୀନାଥ, ସୁରେନ୍ଦ୍ର, କାହ୍ନୁଚରଣ ଉପନ୍ୟାସ ସାହିତ୍ୟକୁ କେବଳ ବିଷୟବସ୍ତୁ ନୁହେଁ, ନୂଆ ଧରଣର ଟେକ୍‌ନିକ୍‌ର ପ୍ରୟୋଗ କରି ଋଦ୍ଧିମନ୍ତ କରିଛନ୍ତି । ସଂପ୍ରତି ଶାନ୍ତନୁ ଆଚାର୍ଯ୍ୟ ଉପନ୍ୟାସ ରଚନା କ୍ଷେତ୍ରରେ ନିଜର ସ୍ୱକୀୟ ଶୈଳୀ ଓ ଭାଷା ପ୍ରୟୋଗ ସହିତ ଏକ ନୂତନ ମୋଡ଼ ମଧ୍ୟ ଦେଇଛନ୍ତି । ହାତରେ ଗଣିଦେଲେ ଉପନ୍ୟାସ ଗଣି ହୋଇଯାଉଛି । ଓଡ଼ିଆ ମାଟିରେ ଉପନ୍ୟାସ ଜନ୍ମ ବେଶୀ ନ ହେବାର କାରଣ କ'ଣ, ଏ ବିଷୟରେ ବ୍ୟାପକ ବିଚାର ବିମର୍ଷ କରିବାର ଆବଶ୍ୟକତା ରହିଛି । ଯେଉଁ ତରୁଣ ଲେଖକମାନେ ଲେଖୁଛନ୍ତି, ସେମାନେ କବିତା ଓ ଗଳ୍ପ ଲେଖିବାକୁ ବେଶୀ ଆଗ୍ରହ ପ୍ରକାଶ କରୁଥିବା ବେଳେ ଉପନ୍ୟାସ ଓ ପ୍ରବନ୍ଧ ପ୍ରତି ଦୃଷ୍ଟି ଦେଉନାହାନ୍ତି ।

ତରୁଣ ଲେଖକମାନେ ଉପନ୍ୟାସ ଲେଖିବା ପ୍ରତି ଆଗ୍ରହ ପ୍ରକାଶ କରିବା ଉଚିତ । ଏଥିପାଇଁ ଓଡ଼ିଆ ଉପନ୍ୟାସ ସାହିତ୍ୟର କ୍ରମବର୍ଦ୍ଧିଷ୍ଣୁ ଧାରା ବିଷୟରେ ପ୍ରଥମେ ସଚେତନତା ଲୋଡ଼ା । ସ୍ୱାଧୀନତା ପୂର୍ବରୁ ଯେଉଁ କେତେଗୋଟି ଉପନ୍ୟାସ ଲେଖାଯାଇଥିଲା, ସେଥିରେ ସାମ୍ରାଜ୍ୟବାଦର ଭଗ୍ନ ରୂପ ପ୍ରକାଶ ପାଇଥିଲା ଓ ଲୋକମାନଙ୍କର ଚେତନାକୁ ସାମାଜିକ ପୃଷ୍ଠଭୂମିରେ ଜାଗ୍ରତ କରିବାକୁ ଚେଷ୍ଟା ହୋଇଥିଲା ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଉପନ୍ୟାସ ରଚନାର ଧାରା ଓ ଶୈଳୀ ବଦଳିଗଲା । ଉଦାହରଣ ଭାବେ ଶାନ୍ତନୁ ଆଚାର୍ଯ୍ୟଙ୍କର ଶକୁନ୍ତଳା ଉପନ୍ୟାସକୁ

ବିସ୍ତୃତ କରିଯାଉ । ଶକୁନ୍ତଳା ସମସାମୟିକ ରାଜନୈତିକ ଆତ୍ମମୁଖ୍ୟ ଉପରେ ଆଧାରିତ ଉପନ୍ୟାସ । ନକ୍ସଲ୍‌ବାଦୀ ଆନ୍ଦୋଳନର ରୂପରେଖ କ'ଣ ଥିଲା ଓ କ'ଣ ହେବାକୁ ଯାଉଛି, ତା'ର ଚିତ୍ର ହିଁ ଶକୁନ୍ତଳା । ବିଷୟବସ୍ତୁ ନିର୍ବାଚନରେ ସ୍ୱାଧୀନୋତ୍ତର ସମାଜ ବ୍ୟବସ୍ଥାର ରୂପ ହିଁ ଉପନ୍ୟାସରେ ପ୍ରତିଫଳିତ ହେଲା । ସ୍ୱାଧୀନତା ପୂର୍ବବର୍ତ୍ତୀ ସମାଜ ବ୍ୟବସ୍ଥା, ସ୍ୱାଧୀନୋତ୍ତର ସମାଜ ବ୍ୟବସ୍ଥା ଓ ବର୍ତ୍ତମାନର ସମାଜ ବ୍ୟବସ୍ଥାରେ ଅନେକ ପରିବର୍ତ୍ତନ ହେଲାଣି । ଏହି ପରିବର୍ତ୍ତନ ସହିତ ସମତାଳରେ ଉପନ୍ୟାସ ରଚନା ହେବା ଉଚିତ । ଏଥିପାଇଁ ବ୍ୟାପକ ଅନୁଭୂତି ସହିତ ଲେଖକର ନିଷ୍ଠା ଉପନ୍ୟାସକୁ ଏକ ନୂତନ ଦୃଷ୍ଟିକୋଣ ଦେବ । କାରଣ ଉପନ୍ୟାସ କେବଳ ଲେଖିବା ପାଇଁ ଲେଖିବା ନୁହେଁ । ପ୍ରତ୍ୟେକ ଉପନ୍ୟାସ ପଛରେ କାରଣ ରହିଛି । ଉପନ୍ୟାସ ଅବସର ସମୟ କଟାଇବାର ମାଧ୍ୟମ ନୁହେଁ । ଏହା ନୂତନ ଚେତନା ଜାଗ୍ରତ କରି ମାନବିକ ମୂଲ୍ୟବୋଧ ଓ ପ୍ରେମ ପ୍ରତିଷ୍ଠା କରେ ।

ଯେଉଁ କେତେକ ତରୁଣ ଲେଖକ ଗଳ୍ପ ଲେଖିବା କ୍ଷେତ୍ରରେ କିଛିଟା ସିଦ୍ଧହସ୍ତତା ଲାଭ କଲେଣି, ସେମାନେ ଉପନ୍ୟାସ ଲେଖିବା କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଓ କିଛି ନୂତନତା ସୃଷ୍ଟି କରିବା ଦରକାର । ଏହାଦ୍ୱାରା କେବଳ ଉପନ୍ୟାସ ସଂଖ୍ୟା ଦୃଷ୍ଟିରୁ ବୃଦ୍ଧି ହେବନି ବରଂ ଏହା ସାମାଜିକ ଦୃଷ୍ଟିଭଙ୍ଗୀକୁ ଗଭୀର ଭାବରେ ଦେଖିବାକୁ ସକ୍ଷମ ହେବା ସହିତ ମାନବିକ ସମ୍ବେଦନକୁ ଦୃଢ଼ୀଭୂତ କରିବ । ଗଳ୍ପର ପରିସର ସୀମିତ ଏବଂ ଏହା ଗଭୀରତାକୁ ଦେଖାଇବାବେଳେ ଗଭୀରତା ମଧ୍ୟରେ ଅବଗାହନ କରିପାରେନାହିଁ । ଉପନ୍ୟାସର କ୍ଷେତ୍ର ବ୍ୟାପକ ଏବଂ ଏହା ପାଠକର ପ୍ରତ୍ୟେକ ଚିନ୍ତା ଓ ଚେତନାର ସ୍ତରକୁ ଛୁଇଁବାକୁ ସକ୍ଷମ ହୁଏ । ଉପନ୍ୟାସ ମଣିଷ ମନରେ ସମ୍ବେଦନ ଜାଗ୍ରତ କରାଏ, ମୂଲ୍ୟବୋଧକୁ ଚିହ୍ନିତ କରେ ଓ ପରିବର୍ତ୍ତନରେ ସାହାଯ୍ୟ କରେ ।

ଫକୀରମୋହନଙ୍କର ଛ'ମାଣ ଆଠଗୁଣ୍ଠ, କାଳିନ୍ଦୀଚରଣଙ୍କର ମାଟିର ମଣିଷ ଇତ୍ୟାଦି ଉପନ୍ୟାସ ମଣିଷକୁ ନୂଆ ଭାବରେ ଦେଖିବାକୁ ସାହାଯ୍ୟ କରେ । ଏହି କାରଣ ଯୋଗୁଁ ହିଁ ଉପନ୍ୟାସର ବ୍ୟାପକ ପରିସରକୁ ଗ୍ରହଣ କରିବା ପାଇଁ ତରୁଣ ଲେଖକମାନେ ଆଗେଇ ଆସିବା ଆଜିର କର୍ତ୍ତବ୍ୟ ନୁହେଁ କି ?



# ଶିଶୁ ସାହିତ୍ୟ

ମୋ' ସାହିତ୍ୟ ସମ୍ପର୍କରେ ଲେଖିବାବେଳେ ପ୍ରଥମେ ମୋ' ମନକୁ ଶିଶୁସାହିତ୍ୟ ବିଷୟ ଆସେ । ଆମ ଶିଶୁସାହିତ୍ୟର ପ୍ରଗତି କେତେ ଏହା ବିଚାର କରିବାର ଆବଶ୍ୟକତା ରହିଛି । ଯେକୌଣସି ଭାଷା ସାହିତ୍ୟକୁ ସମୃଦ୍ଧ କରିବାକୁ ହେଲେ, ତା'ର ଶିଶୁସାହିତ୍ୟ ପ୍ରତି ଗୁରୁତ୍ୱ ଦେବା ପ୍ରଥମେ ଆବଶ୍ୟକ । ଆମ ସାହିତ୍ୟର ଶିଶୁସାହିତ୍ୟ ଉପରେ ଯେପରି ଗୁରୁତ୍ୱ ଦିଆଯାଏ ନାହିଁ । ବିଶିଷ୍ଟ ଲେଖକମାନେ ଶିଶୁସାହିତ୍ୟ ପ୍ରତି ଅଙ୍ଗୀକାରବଦ୍ଧ ନୁହନ୍ତି । ଅନନ୍ତ ପଟ୍ଟନାୟକ ଶିଶୁସାହିତ୍ୟ କ୍ଷେତ୍ରରେ ଏକ ପରୀକ୍ଷାନିରୀକ୍ଷା କରି ଆଲୋଡ଼ନ ସୃଷ୍ଟି କରିଥିଲେ । ନୂତନ ଭାଷା ସୃଷ୍ଟି କରିବାରେ ସିଦ୍ଧହସ୍ତ ଅନନ୍ତ ପଟ୍ଟନାୟକ ଆଧୁନିକ ଶିଶୁସାହିତ୍ୟର ଜନ୍ମଦାତା କହିଲେ ଭୁଲ୍ ହେବ ନାହିଁ ।

ଆମେ କାହିଁକି ପିଲମାନଙ୍କୁ ଶିଶୁସାହିତ୍ୟ ପଢ଼ିବାକୁ ଦେବା ? ତା'ର କାରଣ ଯେଉଁ ଘରେ ପିଲମାନଙ୍କର ରୁଚିସାହିତ୍ୟ ପ୍ରତି ଆକୃଷ୍ଟ ନ ହୁଏ, ସେଠାରେ ପିଲମାନେ 'କମିକ୍' ପଢ଼ିବେ । ପିଲମାନଙ୍କୁ ଉଚିତ ବାତାବରଣ ଭିତରେ ବଢ଼ାଇବାର ଦାୟିତ୍ୱ ବାପାମା'ଙ୍କର । କାରଣ ପିଲମାନଙ୍କୁ ଯେପରି ବାତାବରଣ ମିଳିବ, ସେମାନେ ସେହିପରି ଗଢ଼ିଉଠିବେ । ଏହି କାରଣରୁ ପ୍ରତ୍ୟେକ ଘର ପାଇଁ ଭଲ ଶିଶୁସାହିତ୍ୟର ଆବଶ୍ୟକତା ରହିଛି । ଭଲ ଶିଶୁସାହିତ୍ୟ ପରୋକ୍ଷ ଭାବରେ ପିଲମାନଙ୍କୁ ଶିକ୍ଷିତ, ସଂସ୍କାରଯୁକ୍ତ ଓ ଚୈତନ୍ୟବାନ୍ କରାଏ । ପିଲାବେଳରୁ ଉତ୍ତମ ଶିଶୁସାହିତ୍ୟ ପଢ଼ିବାର ଅଭ୍ୟାସ ସେମାନଙ୍କୁ ବଡ଼ ଦିନରେ ନିଜ ଭାଷା ସାହିତ୍ୟର ରୁଚିପୂର୍ଣ୍ଣ ସାହିତ୍ୟ ପଢ଼ିବାକୁ ପ୍ରେରଣା ଦିଏ ଏବଂ ସେମାନେ ମଧ୍ୟ ସୃଷ୍ଟିଶୀଳ ସର୍ଜ୍ଜନା ପ୍ରତି ଆକୃଷ୍ଟ ହେବେ । ଏହା ସେମାନଙ୍କୁ ନ ମିଳୁଥିବାରୁ ସେମାନେ ବାଧ୍ୟ ହୋଇ ଯାହା ପାଇବେ, ତାକୁ ପଢ଼ିବେ ।

ବର୍ତ୍ତମାନ ଟି.ଭି.ରେ ପିଲମାନଙ୍କ ପାଇଁ ଯେପରି କାର୍ଯ୍ୟକ୍ରମ ଆସୁଛି, ତାହା ଶସ୍ତା 'କମିକ୍'ଠାରୁ ଆହୁରି କ୍ଷତିକାରକ । ଟି.ଭି.ର କାର୍ଯ୍ୟକ୍ରମ ପିଲାବେଳରୁ ସେମାନଙ୍କର ବୌଦ୍ଧିକ ବିକାଶ ପ୍ରକ୍ରିୟାକୁ ବ୍ୟାହତ କରୁଛି । ଏହା କ୍ରମଶଃ ଆମର ସାହିତ୍ୟ ଓ ସଂସ୍କୃତିକୁ ନଷ୍ଟ କରିବ । ଏଥିପାଇଁ ସଚେତନ ହେବା ଓ କାର୍ଯ୍ୟକ୍ରମ ଗ୍ରହଣ କରିବା ଦରକାର ।

ଆମର ଶିଶୁପତ୍ରିକା ବହୁତ କମ୍ । 'ଶିଶୁଲେଖା' ସରକାରୀ ସ୍ତରରେ ପ୍ରକାଶ ହେଉଥିଲେ ମଧ୍ୟ ତାହା 'ଜହ୍ନମାମୁଁ'କୁ ପ୍ରତିଯୋଗିତାରେ ହରାଇପାରୁନି । 'ଜହ୍ନମାମୁଁ' ଶିଶୁପତ୍ରିକା ନାଁରେ ଶିଶୁସାହିତ୍ୟକୁ ନଷ୍ଟ କରିବାର ପ୍ରଚେଷ୍ଟା କରୁଛି । ଏଥିପାଇଁ ସଚେତନତା ଲୋଡ଼ା । ଶିଶୁଲେଖାର ବ୍ୟାପକ ପ୍ରଚାର ଓ ପ୍ରସାର ପାଇଁ ଶିଶୁସାହିତ୍ୟ ସମିତି ଯତ୍ନଶୀଳ ହେବା ଉଚିତ । ଓଡ଼ିଶା ସାହିତ୍ୟ ଏକାଡେମୀ ଶିଶୁସାହିତ୍ୟ ପାଇଁ ପୁରସ୍କାର ଦେଉଛନ୍ତି । କିନ୍ତୁ ଉନ୍ନତମାନର ଶିଶୁସାହିତ୍ୟ ପ୍ରକାଶନ ଦାୟିତ୍ୱ ସେମାନେ ଏପର୍ଯ୍ୟନ୍ତ କରିନାହାନ୍ତି ।

କୌଣସି ପ୍ରତିଷ୍ଠିତ ସାହିତ୍ୟିକ ଶିଶୁସାହିତ୍ୟ ରଚନା କଲେ, ତାଙ୍କର ସୃଜନଶୀଳ ଶକ୍ତିର ଅପଚୟ ହେବ ବୋଲି ସେ ଭାବନ୍ତି ଏବଂ ଏହି କାରଣରୁ ଓଡ଼ିଶାର ପ୍ରତିଷ୍ଠିତ ଲେଖକମାନେ ଶିଶୁମାନଙ୍କ ପାଇଁ ଲେଖିବାକୁ ବିମୁଖ ବା ଶ୍ରଦ୍ଧା ପ୍ରକାଶ କରୁନାହାନ୍ତି । ସାହିତ୍ୟ ଏକାଡେମୀ ଓ ଶିଶୁସାହିତ୍ୟ ସମିତି ମିଳିତଭାବେ ବା ନିଜ ନିଜ ପ୍ରଚେଷ୍ଟାରେ ଶିଶୁସାହିତ୍ୟ ପ୍ରକାଶନ ପାଇଁ ଯତ୍ନବାନ୍ ହେବା ଆବଶ୍ୟକ । ଶିଶୁ ସାହିତ୍ୟକୁ ଏକ ବ୍ୟାପକ ଆନ୍ଦୋଳନ କରି ଗଢ଼ିତୋଳିବା ପାଇଁ ଶିଶୁସାହିତ୍ୟ ସମିତି ଏକ ଝପଡ଼ା ତିଆରି କରିବା ଦରକାର ।'

ଓଡ଼ିଶାରେ ପ୍ରାୟ ପ୍ରତ୍ୟେକ ଖବରକାଗଜ ସାପ୍ତାହିକ ଶିଶୁସାହିତ୍ୟ ପୃଷ୍ଠା ରଖିଛନ୍ତି । ଏହା ନିଶ୍ଚିତଭାବେ ସ୍ୱାଗତଯୋଗ୍ୟ ପଦକ୍ଷେପ । ସେମାନେ ସେହି ପୃଷ୍ଠାକୁ ପୂର୍ଣ୍ଣ ଭାବରେ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ରଖିବା ଉଚିତ । ଗଣମାଧ୍ୟମର ଭୂମିକା ଭାଷାସାହିତ୍ୟର ବିକାଶ ପାଇଁ ଅପରିହାର୍ଯ୍ୟ ହେଉଥିବା ହେତୁ ଶିଶୁସାହିତ୍ୟ ପାଇଁ ସେମାନେ ଅଧିକ ଯତ୍ନଶୀଳ ହେଲେ, ତାହା ଶିଶୁମାନଙ୍କ ପାଇଁ ମନୋରଞ୍ଜନ ଓ ରୁଚିପୂର୍ଣ୍ଣ ସାହିତ୍ୟ ସୃଷ୍ଟିରେ ସହାୟକ ହେବ ।

ଓଡ଼ିଶାରେ ଶିଶୁସାହିତ୍ୟର ବିକାଶ ପାଇଁ ଲେଖକମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ବେଶୀ । ଯଦି ସେମାନେ ତାହା ନିଷ୍ଠାର ସହ ସମ୍ପନ୍ନ ନ କରନ୍ତି, ତେବେ ଆମ ଭାଷା ସାହିତ୍ୟରେ ପ୍ରକାଶ ପାଉଥିବା ଗଳ୍ପ, ଉପନ୍ୟାସ ଓ କବିତା ପଢ଼ିବାକୁ ପାଠକର ଅଭାବ ନିଶ୍ଚୟ ଦେଖାଦେବ । ଏଥିପାଇଁ ପ୍ରତ୍ୟେକ ଲେଖକ, କବି, ଗାଳ୍ପିକ କିଛି କିଛି ସୃଷ୍ଟିଶୀଳ ଶିଶୁସାହିତ୍ୟ ପ୍ରତି ବଚନବଦ୍ଧ ହୋଇ ଲେଖିବା ଉଚିତ ।

ପ୍ରତ୍ୟେକ ସାହିତ୍ୟ ସଭା, ସମିତି ଓ ଆଲୋଚନାଚକ୍ରରେ ଶିଶୁସାହିତ୍ୟ ଉପରେ ଗୁରୁତ୍ୱ ଦେଇ ସାହିତ୍ୟର ବିକାଶ ପାଇଁ ମାର୍ଗ ନିର୍ଦ୍ଧାରଣ କରିବାକୁ ଆହ୍ୱାନ ଦେବା ଆଜିର ଆବଶ୍ୟକତା ନୁହେଁ କି ?



# ଅନୁବାଦ ସାହିତ୍ୟ

ଭାରତୀୟ ଭାଷା ସାହିତ୍ୟ ସହିତ ନିଜ ଭାଷା ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ ପାଇଁ ଅନୁବାଦର ଭୂମିକାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଅନୁବାଦ ସାହିତ୍ୟ ଉପରେ ଗୁରୁତ୍ୱ ଦେବାପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ଅନୁବାଦ ପାଇଁ ପୁରସ୍କାର ଘୋଷଣା କରାଯାଇଛି । କେନ୍ଦ୍ର ସାହିତ୍ୟ ଏକାଡେମୀ, ନ୍ୟାସନାଲ ବୁକ୍ ଟ୍ରଷ୍ଟ ଇତ୍ୟାଦି ଅନୁବାଦ କାର୍ଯ୍ୟ ହାତକୁ ନେଇଛନ୍ତି । ଅନ୍ୟ କେତେକ ପ୍ରକାଶନ ସଂସ୍ଥା ମଧ୍ୟ ଅନୁବାଦ କାର୍ଯ୍ୟ ନେଲେଣି । କିନ୍ତୁ ଏହା ସୀମିତ । ଯେଉଁ କେତେଗୁଡ଼ିଏ ବହି ଅନୁବାଦ ହୋଇଛି, ସେଥିମଧ୍ୟରୁ ବଙ୍ଗଳା ସାହିତ୍ୟ ବେଶୀ । ତା'ର କାରଣ ବଙ୍ଗଭାଷା ଆମର ପଡ଼ୋଶୀ ଭାଷା ଓ ବହୁଲୋକ ଏହି ଭାଷା ସାହିତ୍ୟ ସହିତ ବେଶ୍ ପରିଚିତ ।

ଅନୁବାଦ କରିବା କାର୍ଯ୍ୟ ସହଜ ନହେଲେ ମଧ୍ୟ ବଙ୍ଗଳା ସାହିତ୍ୟ ପ୍ରତି ଆମର ପରିଚିତି ନିବିଡ଼ ଥିବାରୁ, ଏହା ସହଜରେ ହୋଇପାରୁଛି । କିନ୍ତୁ ବଙ୍ଗଳା ସାହିତ୍ୟରୁ ଅନୁବାଦ କଲାବେଳେ ବିପଦ ବେଶୀ । ଜାଣିତରେ ବା ଅଜାଣତରେ ବଙ୍ଗଳା ଭାଷାର ଶବ୍ଦରାଜି ଆମ ସାହିତ୍ୟରେ ପ୍ରବେଶ କରୁଛି । ଯେକୌଣସି ଭାଷାରେ ଶବ୍ଦ ସୃଷ୍ଟି ହେବା, ଶବ୍ଦ ଭଣ୍ଡାର ବଢ଼ିବା ସେ ସାହିତ୍ୟ ପାଇଁ ଶୁଭଙ୍କର । କିନ୍ତୁ ପଡ଼ୋଶୀ ସାହିତ୍ୟର ଶବ୍ଦ ଆମ ସାହିତ୍ୟ ଶବ୍ଦ ସହିତ ମିଶ୍ରଣ, ସାହିତ୍ୟର ଗୁଣାତ୍ମକ ବିକାଶର ଅନ୍ତରାୟ । ଏଥିପ୍ରତି ସାବଧାନ ରହିବା ଆବଶ୍ୟକ । ନ୍ୟାସନାଲ ବୁକ୍ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ କେତେଗୁଡ଼ିଏ ଅନୁଦାନ ବହି ପଢ଼ିବାର ସୌଭାଗ୍ୟ ହୋଇଥିଲା । ପ୍ରତ୍ୟେକ ବହିର ପ୍ରାରମ୍ଭରେ ଏକ ବିରାଟ ମୁଖବନ୍ଧ ଦିଆଯାଇ ସେହି ଭାଷା ସାହିତ୍ୟ ସମ୍ପର୍କରେ ଓ ଲେଖକ ସମ୍ପର୍କରେ କୁହାଯାଇଛି । ଏହା ଏକ ଉଚିତ ପଦକ୍ଷେପ । କେବଳ ଅନୁବାଦ କରି ଉପନ୍ୟାସକୁ ପ୍ରକାଶିତ କରାଗଲେ, ସେହି ଭାଷା ସାହିତ୍ୟ ସମ୍ପର୍କରେ ସମ୍ୟକ ଅବବୋଧ ମଧ୍ୟ ସୃଷ୍ଟି ହୁଅନ୍ତା ନାହିଁ । ମୁଖବନ୍ଧ ଲେଖା ହେବାଦ୍ୱାରା ପାଠକ ମାନସିକ ସ୍ତରରେ ସେହି ଭାଷା ସାହିତ୍ୟର ବିକାଶ ସମ୍ପର୍କରେ କିଛି ଜାଣିପାରୁଛି ଏବଂ ଅନ୍ୟ କିଛି ଲେଖକଙ୍କର ସୃଷ୍ଟିକୁ ଅଧ୍ୟୟନ କରିବାର ଅଭିପ୍ସା ରଖୁଛି । ମାଲୟାଲମ—ସାହିତ୍ୟରେ ପ୍ରକାଶିତ ଉପନ୍ୟାସ 'କାନ୍ନାଡ଼ି'ର ଲେଖକ ଶ୍ରୀ ପି. କେଶବଦେବ । ଉକ୍ତ ପୁସ୍ତକଟି ଓଡ଼ିଆ ଭାଷାରେ ଅନୁଦିତ

ହୋଇଛି । ତା'ର ମୁଖବନ୍ଧ ଲେଖିଛନ୍ତି ଟି.ଏନ୍. ଜୟଚନ୍ଦ୍ରନ୍ । ସେହି ମୁଖବନ୍ଧରେ ସେ କହିଛନ୍ତି, "ତକାଶିଙ୍କର 'ଏଣିଗ୍‌ପଟ୍ଟକଲ', ଏମ୍.ଟି. ବାସୁଦେବ ନାୟାରଙ୍କର 'ନାଲୁକେଟ୍ଟୁ', ପାରପୁରଥ୍ଙ୍କର 'ଅରବାଖିକନେରମ୍' ଆଦି ରଚନା ଭଳି କେଶବ-ଦେବଙ୍କ 'କାନ୍ନାଡ଼ି' ଅନ୍ୟ ଯେକୌଣସି ପ୍ରାଦେଶିକ ଭାଷାରେ ଅନୁବାଦ କରିବା ଯୋଗ୍ୟ ନୁହେଁ । ଏଭଳି ରଚନା 'ଅୟ୍ୟଲକ୍‌କାର' ବା 'ଓଡ଼ୟିଳ ନିନ୍ନୁ' ସହିତ ତୁଳନା କରାଯାଇପାରେ । ଏ ଦୁଇଟି ହେଉଛି କେଶବଦେବଙ୍କ ସଫଳ ସୃଷ୍ଟି ।"

ଏହିପରି ଏକ ତୁଳନାତ୍ମକ ଓ ସାହିତ୍ୟ ଇତିହାସର ସମ୍ୟକ୍ ସୂଚନା ଦେବାଦ୍ୱାରା ପାଠକ ଆହୁରି ଅନେକଗୁଡ଼ିଏ ବହି ସହିତ ପରିଚିତ ହୋଇପାରୁଛି । ଅନୁବାଦ ଉପନ୍ୟାସଟି ଯଦି ଭଲ ଲାଗେ, ତେବେ ପାଠକ ମନରେ ଅଧିକ ପଢ଼ିବାକୁ ଆଗ୍ରହ ସୃଷ୍ଟି ହେବ । ମାଲୟାଲମ୍ ସାହିତ୍ୟ ଉପନ୍ୟାସ 'କାନ୍ନାଡ଼ି' ଅର୍ଥାତ୍ 'ଆଇନା' କେରଳର ଶ୍ରମିକ ଆନ୍ଦୋଳନ ଉପରେ ଲେଖାଯାଇଛି । ଏହି ଉପନ୍ୟାସକୁ ପଢ଼ିବା-ବେଳେ ଶ୍ରମିକ ଆନ୍ଦୋଳନର ରୂପରେଖ ଆରମ୍ଭରେ କିପରି ଥିଲା ଓ ତାହା ସମୟକ୍ରମେ କେଉଁପରି ଅବସ୍ଥାରେ ଆସି ପହଞ୍ଚିଛି; ତା'ର ଧାରଣା କରିହୁଏ । ସେହି ବହିଟିର ଆଲୋଚନା ବା ସମାଲୋଚନା କରିବା ଏ ଲେଖାର ଉଦ୍ଦେଶ୍ୟ ନୁହେଁ । ଏପରି ବିଷୟବସ୍ତୁକୁ ନେଇ ଓଡ଼ିଆ ସାହିତ୍ୟରେ ଉପନ୍ୟାସ ଖୁବ୍ କ୍ୱଚିତ ରହିଛି । ବିଶେଷକରି ଯେପରି ସେ ଶ୍ରମିକ ଆନ୍ଦୋଳନର ମୌଳିକ ସତ୍ୟକୁ ଉଦ୍‌ଘାଟନ କରିଛନ୍ତି, ତାହା ପ୍ରଣିଧାନଯୋଗ୍ୟ । ଏହି ଉପନ୍ୟାସଟି ପଢ଼ିବା ଦ୍ୱାରା ନିଜ ଭାଷା ସାହିତ୍ୟରେ ପ୍ରକାଶିତ ଉପନ୍ୟାସରେ କେଉଁ ପ୍ରକାର ତ୍ରୁଟିବିଚ୍ୟୁତି ରହିଛି, ତାହା ମଧ୍ୟ ଅନୁଭବ କରାଯାଇପାରିବ । କାରଣ ଜଣେ ଔପନ୍ୟାସିକ ଲେଖିବାବେଳେ ଯାହା ମନକୁ ଆସିବ, ତାହା ଲେଖିପାରିବ ନାହିଁ । ବିଶେଷକରି ଐତିହାସିକ ବା ସାମାଜିକ ଉପନ୍ୟାସ ଇତିହାସ ଓ ସମାଜର ସତ୍ୟାନୁଷ୍ଠ ପରିପ୍ରକାଶ ହୋଇଥିବା ଉଚିତ ।

ସେହିପରି ନ୍ୟାସନାଲ ବୁକ୍ ଟ୍ରଷ୍ଟର ଅନ୍ୟ ଏକ ଅନୁବାଦ ଉପନ୍ୟାସ ହେଉଛି 'ଇଚ୍ଛାମତୀ' । ଏହା ବିଭୂତିଭୂଷଣ ବନ୍ଦୋପାଧ୍ୟାୟଙ୍କ ଦ୍ୱାରା ରଚିତ । ଏହାର ମୁଖବନ୍ଧ ବଙ୍ଗଳା ସାହିତ୍ୟ ଇତିହାସ ସମ୍ପର୍କରେ ସମ୍ୟକ୍ ଧାରଣା ନ ଦେଇ ବିଭୂତିଭୂଷଣ ବନ୍ଦୋପାଧ୍ୟାୟଙ୍କ ପୁତ୍ରକର ଏକ ଚିତ୍ର ପ୍ରଦାନ କରିଛି । ବଙ୍ଗଳା ଭାଷାରୁ ଅନୁବାଦ କଲାବେଳେ ଅଧିକ ସତର୍କ ଅନୁବାଦକ ରହିବା ଆବଶ୍ୟକ ବୋଲି ଏଥିରୁ ଅନୁମିତ ହେଉଛି ଏବଂ ଏ ବହିରେ କେତେକ ବନାନ୍ ଅଶୁଦ୍ଧି ମଧ୍ୟ ଲକ୍ଷ୍ୟ କରାଯାଉଛି ।

ବିଭିନ୍ନ ଭାଷା ସାହିତ୍ୟରୁ ଗଳ୍ପ, କବିତା, ଉପନ୍ୟାସ, ନାଟକ ଇତ୍ୟାଦି ଅନୁବାଦ ହେଲେ ପଢ଼ିବାର ବ୍ୟାପକ ପରିସର ମିଳିବା ସହିତ ଏକ ତୁଳନାତ୍ମକ

ଚିତ୍ର ଆଙ୍କିବା ସମ୍ଭବ ହୋଇପାରିବ । ବିଭିନ୍ନ ଭାଷାରୁ ଓଡ଼ିଆ ଭାଷାକୁ ଓ ଓଡ଼ିଆ ଭାଷାରୁ ଅନ୍ୟ ଭାଷାକୁ ଅନୁବାଦ କରିବାର ଯେଉଁ ପ୍ରଚେଷ୍ଟା ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ କରୁଛନ୍ତି, ତାହା ସାହିତ୍ୟର ମାନ ଅଭିବୃଦ୍ଧିରେ ସାହାଯ୍ୟ କରିବ ଏବଂ ବିଭିନ୍ନତା ଓ ବିଚିତ୍ରତା ମଧ୍ୟରେ ସାହିତ୍ୟ ଯେଉଁ ଏକତ୍ୱର ପ୍ରତିନିଧିତ୍ୱ କରୁଛି, ଏହା ପ୍ରମାଣିତ ହେବ । ଏହାବ୍ୟତୀତ ସୃଜନଶୀଳ ସାହିତ୍ୟର ମାପକାଠି ମଧ୍ୟ ସ୍ଥିର କରାଯାଇପାରିବ । ଅନୁବାଦ ସାହିତ୍ୟର ଭୂମିକା, ପ୍ରଭାବ ଓ ଆବଶ୍ୟକତା ଇତ୍ୟାଦି ସମ୍ପର୍କରେ ବ୍ୟାପକ ଆଲୋଚନା ହେବା ଆଜିର ଦାୟିତ୍ୱ ନୁହେଁ କି ?



# ଓଡ଼ିଆ ସାହିତ୍ୟ ଆଲୋଚନା

ମୋ ସାହିତ୍ୟ ବହୁତ ଆଗେଇଛି; ବିଶ୍ୱ ସାହିତ୍ୟ ନ ହେଲେ ଭାରତୀୟ ସାହିତ୍ୟ ସହିତ ତାଳ ଦେଇ ଚାଲିଛି ବୋଲି ସମସ୍ତେ ସଭା ସମିତିରେ କହୁଛନ୍ତି । କାରଣ ଏଇ ବର୍ଷକ ଭିତରେ ମୂର୍ତ୍ତିଦେବୀ ପୁରସ୍କାର, ସରସ୍ୱତୀ ପୁରସ୍କାର ଓ ଜ୍ଞାନପୀଠ ପୁରସ୍କାର ଓଡ଼ିଆ ସାହିତ୍ୟକୁ ମିଳିଛି । ବ୍ୟକ୍ତିଗତ ଭାବେ ଯେଉଁମାନେ ଏ ପୁରସ୍କାର ପାଇଛନ୍ତି, ସେମାନେ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବାର ପ୍ରୟାସ ଏଯାବତ୍ ଜାରି ରଖିଛନ୍ତି । ଏହି ପୁରସ୍କାର ଓ ସମ୍ମାନ ଦ୍ୱାରା ଆମେ ଗର୍ବିତ ଓ ସେଇଥିପାଇଁ ବାହାସ୍ଫୋଟ ମାରି କହିପାରୁଛୁ ଯେ, ଓଡ଼ିଆ ସାହିତ୍ୟ ଭାରତୀୟ ସାହିତ୍ୟର ସମକକ୍ଷ ହୋଇପାରିଛି ।

କିନ୍ତୁ ମନରେ ଗୋଟିଏ ପ୍ରଶ୍ନ ଆସୁଛି, ''ସତେ କ'ଣ ଆମେ ସମକକ୍ଷ ହୋଇଛୁ ?'' ଏ ପ୍ରଶ୍ନର ଉତ୍ତର ଦେବା ସହଜ ନୁହେଁ । ଯେଉଁମାନେ ସହଜରେ 'ହଁ ବୋଲି କହି ପାରୁଛନ୍ତି, ସେମାନେ ଆମ ଆଗରେ କେବଳ ବୌଦ୍ଧିକ ଚାଲବାଜି କରୁଛନ୍ତି । କାରଣ ଏଯାବତ୍ ବିଭିନ୍ନ ଭାଷାର ସାହିତ୍ୟ ଆମ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିନି । ତେଣୁ ମୂଲ୍ୟାଙ୍କନ କଲାବେଳେ କିପରି ମୂଲ୍ୟାଙ୍କନ ହେବ ଏବଂ ଏହାର ମାପକାଠି କ'ଣ, ତାହା ପ୍ରଥମେ ସ୍ଥିର ହେବା ଉଚିତ ।

ପଡ଼ୋଶୀ ଭାଷା ସାହିତ୍ୟର ତୁଳନାତ୍ମକ ଚର୍ଚ୍ଚା ଟାଣିବା ପୂର୍ବରୁ ଆମ ସାହିତ୍ୟର ଆଲୋଚନା ଓ ସମାଲୋଚନା ଦିଗଟିକୁ ଟିକିଏ ନିରେଖିବା । ଯେଉଁମାନେ ସୃଷ୍ଟିଶୀଳ ସ୍ରଷ୍ଟା, ସେମାନେ ଆଲୋଚନା ଓ ସମାଲୋଚନା ନଥିବା କହିବା ବେଳେ ଯେଉଁ କେତେକ ନିଜକୁ ସମାଲୋଚକ ଆସନରେ ଅଧିରୂଢ଼ କରାଇଛନ୍ତି, ସେମାନେ ନିଜ ନିଜର ବଡପଣିଆରେ କାହାକୁ ଉତ୍କୃଷ୍ଟ କହି କାହାକୁ ନିକୃଷ୍ଟ କରି ଦେଉଛନ୍ତି । କାରଣ ସମାଲୋଚନାର ଧାରା ଏ ପର୍ଯ୍ୟନ୍ତ ମଧ୍ୟ ସ୍ୱୀକୃତ ହୋଇ ପାରିଲା ନାହିଁ । ସମାଲୋଚନା ଅଧ୍ୟାପକମାନଙ୍କର ଶ୍ରେଣୀଗୃହ ବକ୍ତୃତାରେ ଆବଦ୍ଧ ରହିଛି । କେବେ କେବେ ପ୍ରଶଂସାର କୁଢ଼ମାନ ପତ୍ରପତ୍ରିକାରେ ବର୍ଷି ଯାଉଅଛି । ସମାଲୋଚନା ନଥିବା ହେତୁ ଆମ ସାହିତ୍ୟର ମୂଲ୍ୟାଙ୍କନ ସଠିକ୍ ହୋଇ ପାରୁନାହିଁ । ଅନ୍ୟ ଭାରତୀୟ ଭାଷା ସାହିତ୍ୟର ସମକକ୍ଷ ହେବାକୁ କହିବା ବେଳେ ଆମର ସମାଲୋଚନା ଦିଗଟିକୁ ଅଧିକ ପୁଷ୍ଟ ଓ ମର୍ଯ୍ୟାଦାବନ୍ତ କରିବାର

ଆବଶ୍ୟକତା ରହିଛି । କାରଣ କେବଳ ସମାଲୋଚନା ମାଧ୍ୟମରେ ହିଁ ସାହିତ୍ୟର ବ୍ୟବଚ୍ଛେଦ ହୋଇପାରିବ ଓ ନିର୍ଯାସ ବାହାରି ପାରିବ ।

ସାହିତ୍ୟ ସମାଲୋଚନା କେଉଁ ଦିଗକୁ ପ୍ରତି ଦୃଷ୍ଟି ଦେବ ବା କେଉଁ କେଉଁ ବିଷୟ ପ୍ରତି ଲେଖକଙ୍କର ଭ୍ରାନ୍ତି ରହିଛି, ତାହା ନିରୂପିତ କରିବା ବେଳେ ଲେଖକର ପ୍ରତିବଦ୍ଧତା ପ୍ରତି ବିଚାର କରିବ ନାହିଁ କି ? ଏ ପ୍ରଶ୍ନଟି ଏପରି ଏକ ବ୍ୟାପକ ପ୍ରଶ୍ନ, ତାହାକୁ ପ୍ରାୟତଃ ସମାଲୋଚକମାନେ ଏଡ଼ାଇ ଯାଆନ୍ତି । କେବଳ ଭାଷା, ରୂପକଳ୍ପ, ବର୍ଣ୍ଣନା ଶୈଳୀ ସଂପର୍କରେ ଆଲୋଚନାକୁ ପୁଷ୍ଟ କଲାବେଳେ ଲେଖକଙ୍କର ପ୍ରତିବଦ୍ଧତା ବା ଅଙ୍ଗୀକାରବଦ୍ଧତା ସଂପର୍କରେ ସାଧାରଣତଃ ନୀରବ ରହିଥାଆନ୍ତି ବା ଏକ ଉପରଠାଉରିଆ ମନ୍ତବ୍ୟ ଦେଇଥାନ୍ତି ।

ଏଠାରେ ପ୍ରତିବଦ୍ଧତା ବା ଅଙ୍ଗୀକାରବଦ୍ଧତା ସମ୍ପର୍କରେ ଉଠାଇବାର ଅର୍ଥ କ'ଣ ? ସାହିତ୍ୟ ସମାଜକୁ ନେଇ ସୃଷ୍ଟି ହୋଇଥାଏ । ଯଦି ଆମେ ରାମାୟଣ ଓ ମହାଭାରତକୁ ଉଚ୍ଚ କାବ୍ୟ ପରମ୍ପରାର ପ୍ରତୀକ ଭାବେ ନେଉଛୁ, ତେବେ ସେଥିରେ କେବଳ ସେହି ସମୟର ସମାଜ ପ୍ରତିବିମ୍ବିତ ହୋଇ ନାହିଁ ବରଂ ଆଧୁନିକ ସମୟ ପାଇଁ ବା ଯୁଗ ଯୁଗ ପାଇଁ ଏକ ସାର୍ବଜନୀନ ବାର୍ତ୍ତା ପ୍ରତିଫଳିତ ହୋଇଛି । ବ୍ୟକ୍ତି ଓ ସମାଜ ଯେପରି ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ରହିଛନ୍ତି, ଠିକ୍ ସେହିପରି ସମାଜ ଓ ସାହିତ୍ୟ । ଏହାକୁ ପୃଥକ୍ କରି ଦେଖାଯାଇ ପାରେନି ।

ଯଦି ବ୍ୟକ୍ତି ସତ୍ତାରେ କିଛି ପରିବର୍ତ୍ତନ ପରିଲକ୍ଷିତ ହେଉଛି ବା ବ୍ୟକ୍ତି ସତ୍ତା ମାର୍କସ୍‌ବାଦ, ହେତୁବାଦ, ଆଧ୍ୟାତ୍ମିକତାବାଦ ଦ୍ୱାରା ଆକ୍ରାନ୍ତ ହେଉଛି, ତେବେ ସମାଜ ବ୍ୟବସ୍ଥାରେ ସେହି ପରିବର୍ତ୍ତନ ନିଶ୍ଚିତ ଭାବେ ସୁସ୍ପଷ୍ଟ । ଯାହା ବ୍ୟକ୍ତି ଜୀବନରେ ଘଟୁଛି, ତାହା ସମାଜ ଯୋଗୁଁ ହିଁ ଘଟୁଛି । ସମାଜକୁ ସାହିତ୍ୟ କେଉଁ ଭାବରେ ଦେଖୁଛି ଓ ତା'ର ପ୍ରତିଛବିକୁ କିଭଳି ପ୍ରତିଫଳିତ କରୁଛି, ତାହା ଉପରେ ହିଁ ସାହିତ୍ୟର ମାନ ନିର୍ଦ୍ଧାରଣ ହେବ । ସେହି ମାନକୁ ନେଇ ଆଲୋଚନା ଓ ସମାଲୋଚନା ଅନ୍ୟ ବିଭବ ଓ ବୈଶିଷ୍ଟ୍ୟକୁ ପ୍ରତିପାଦନ କରିପାରେ ।

ଆମେ ଆମ କଥାସାହିତ୍ୟର ଜନକ ଭାବେ ଫକୀରମୋହନଙ୍କୁ ଗ୍ରହଣ କରିଛୁ । କାରଣ ଫକୀରମୋହନଙ୍କ ସୃଷ୍ଟି ସେହି ସମାଜ ବ୍ୟବସ୍ଥାର ନିଖୁଣ ଚିତ୍ର ଆଙ୍କିବା ବେଳେ ଆମ ମନରେ ଏକ ସାର୍ବଜନୀନ ଭାବନା ଉଦ୍ରେକ କରାଇବାକୁ ସକ୍ଷମ ହୋଇ ପାରିଛି । ସେହି ଭାବନା ହେଉଛି ମାନବିକତା, ନିଷ୍ପେଷିତ, ନିର୍ଯାତିତ, ଦୁଃଖ ଓ ଦାରିଦ୍ର୍ୟରେ ନିପୀଡ଼ିତ ମାନବାତ୍ମାର ବିକଳତା ଆମ ହୃଦୟକୁ ସ୍ପର୍ଶ କରୁଛି ଏବଂ ଆମେ ସେହି ସେହି ଚରିତ୍ରମାନଙ୍କ ପ୍ରତି ଅଧିକ ସମ୍ବେଦନଶୀଳ, ସହାନୁଭୂତିଶୀଳ

ହୋଇ ପଡ଼ୁଛୁ । ସେଇଠି ସୃଷ୍ଟି ଉତ୍କର୍ଷତା ଲାଭ କରିଛି ଏବଂ ସମୟ, କାଳ ଓ ସମାଜକୁ ଅତିକ୍ରମ କରି ଚାଲିଛି ।

ସମାଜ ପରିବର୍ତ୍ତିତ ହେଉଛି । କାରଣ ପରିବର୍ତ୍ତନ ଏହାର ଧର୍ମ । ସମାଜ ବ୍ୟବସ୍ଥାରେ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ପୁନର୍ବିନ୍ୟାସ ଘଟୁଛି । ଦାର୍ଶନିକମାନଙ୍କ ଚିନ୍ତାରୁ ଉତ୍ପନ୍ନ 'ବାଦ'ର ପ୍ରୟୋଗ ରୂପାନ୍ତରିତ ହୋଇଯାଉଛି । ଯେଉଁ ସାହିତ୍ୟକୁ ଆମେ ଗୋଟିଏ 'ବାଦ'ର କଷଟିପଥରରେ ପରଖୁଥିଲୁ, ତାହା ଅନ୍ୟ ରୂପ ପରିଗ୍ରହ କରୁଛି । ସାହିତ୍ୟର ସେହି ନୂତନ ପରିଗ୍ରହ ରୂପର ମୂଲ୍ୟାଙ୍କନ କଲାବେଳେ ସମାଜ ବ୍ୟବସ୍ଥା ଉପରେ ଲଦା ହୋଇଥିବା 'ବାଦ' ପୃଷ୍ଠଭୂମି ଉପରେ ଆଉ ବିଚାର କରାଯାଇପାରିବ ନାହିଁ । ଯଦି ଆମେ ବିଚାର କରୁ, ତେବେ ବିଚାର ବିଭ୍ରମ ଘଟିବ ।

ସଂପ୍ରତି ସମଗ୍ର ବିଶ୍ୱ ବଦଳିଯାଉଛି । ବିଶ୍ୱ ପ୍ରେକ୍ଷାପଟରେ ଯେଉଁ ପରିବର୍ତ୍ତନ ଦେଖାଦେଇଛି, ତା'ର ପ୍ରଭାବ ଭୟଙ୍କର ଭାବରେ ସବୁ ଦେଶର ସମାଜ ବ୍ୟବସ୍ଥାରେ ଆଲୋଡ଼ନ ସୃଷ୍ଟି କରି ଚାଲିଛି । ମାନବାତ୍ମା କଳବଳ ହୋଇ ଉଠୁଛି । ତା' ହୃଦୟର ଆଶାବାଦ ଓ ନିରାଶାବାଦର ସ୍ୱର ପ୍ରତ୍ୟେକ ସାହିତ୍ୟରେ ଗୁଞ୍ଜରିତ ହେବାବେଳେ ଆମ ସାହିତ୍ୟ କେତେ ମାତ୍ରାରେ ସେଥିପ୍ରତି ସଚେତନ ଓ ଏହି ସଚେତନତା କିଭଳି ଭାବରେ ଆମ ସୃଷ୍ଟି ସମ୍ଭାରକୁ ରୂପାୟିତ କରୁଛି, ଯଦି ତା'ର ସଠିକ୍ ମୂଲ୍ୟାୟନ ନହୁଏ, ତେବେ ଆମେ ଭାରତୀୟ ସାହିତ୍ୟ ବା ବିଶ୍ୱ ସାହିତ୍ୟ ସହିତ ସମକକ୍ଷ ବୋଲି କହି ପାରିବା କି ? ସେ ବିଷୟରେ ଅଧିକ ଆଲୋଚନା ଓ ସମାଲୋଚନା କରିବାକୁ ସାହିତ୍ୟ ଆଲୋଚକମାନେ ଆଗେଇ ଆସି ସତ୍ୟ ପରିବେଷଣ କଲେ ଆମ ସାହିତ୍ୟ ଅଧିକ ଋଦ୍ଧିମନ୍ତ ହେବନାହିଁ କି ?



# ଓଡ଼ିଶା ସାହିତ୍ୟ ଏକାଡେମୀ

ମୋ ଭାଷାରେ ସୃଷ୍ଟି ହୋଇଥିବା ଓଡ଼ିଶା ସାହିତ୍ୟ ଏକାଡେମୀ ଭାଷା ସାହିତ୍ୟର ଉନ୍ନତି ପ୍ରତି ଦୃଷ୍ଟି କେତେ ଦେଉଛି, କେତେ ନ ଦେଉଛି ସେ ସମ୍ପର୍କରେ ବହୁ ତର୍କବିତର୍କ ଚାଲିଛି । ଏବର୍ଷ ଯେପରି ଭାବରେ ପୁରସ୍କାର ମନୋନୀତ କରାଗଲା, ସେଥିନେଇ ଅନେକେ ନାସିକାକୁଞ୍ଚନ କରିଛନ୍ତି ଏବଂ କେହି କେହି ଲେଖକ ଏହାକୁ ପ୍ରତ୍ୟାଖ୍ୟାନ କରିବେ ବୋଲି ବିବୃତି ମଧ୍ୟ ଦେଲେଣି । ଓଡ଼ିଶା ସାହିତ୍ୟ ଏକାଡେମୀର ପୁରସ୍କାର ବିଳମ୍ବରେ ଦିଆଯାଉଛି ଏବଂ ମନୋନୟନ ତ୍ରୁଟିପୂର୍ଣ୍ଣ । ଏହାକୁ କିପରି ସୁଧାରି ହେବ, ସେଥିନେଇ ଏକ ବିଧିବଦ୍ଧ ଖସଡ଼ା ହୁଏତ ଏକାଡେମୀକୁ ଏପର୍ଯ୍ୟନ୍ତ କେହି ଦେଇ ନାହିଁ ବା ଏକାଡେମୀ ନିଜେ ମଧ୍ୟ ପ୍ରସ୍ତୁତ କରି ନାହିଁ । ଏକାଡେମୀ ସ୍ୱୟଂସମ୍ପୂର୍ଣ୍ଣ ହୋଇଥିଲେ ହେଁ ଏଥିରେ ରାଜନୈତିକ ହସ୍ତକ୍ଷେପ ମଧ୍ୟ ରହିଛି ଏବଂ ବ୍ୟୁରୋକ୍ରାଟିକ ମହଲରୁ ମଧ୍ୟ ମୁକ୍ତି ପାଇ ନାହିଁ । ଏହାକୁ କିପରି ଏକ ସ୍ୱୟଂଶାସିତ ଅନୁଷ୍ଠାନ କରାଯାଇପାରିବ, ଏକାଡେମୀ ପୁରସ୍କାରକୁ ନିରପେକ୍ଷ ଭାବରେ ବିଚାର କରି ଦିଆଯାଇପାରିବ, ସେ ସମ୍ପର୍କରେ ଏକ ସାହିତ୍ୟିକ ବୈଠକ ବା ଅଧିବେଶନ ହେବା ଉଚିତ । ଏହାର ନିର୍ଯ୍ୟାସକୁ ଯଦି ସରକାର ଗ୍ରହଣ ନ କରନ୍ତି ବା ଗ୍ରହଣ କରି ଅଯଥା ହସ୍ତକ୍ଷେପ କରନ୍ତି, ତେବେ ସାହିତ୍ୟିକମାନେ ଏକାଠି ହୋଇ ଏହାର ପ୍ରତିରୋଧ କରିପାରିବେ ବା ସ୍ୱର ଉତ୍ତୋଳନ କରିପାରିବେ । ଯଦି ସେମିନାର, ସଭା ବା ଆଲୋଚନା କରି ନିର୍ଯ୍ୟାସ ବାହାର କରାଯାଇପାରିବନି, ତେବେ ଏକ ପ୍ରଶ୍ନାବଳୀ ମାଧ୍ୟମରେ ସାହିତ୍ୟିକମାନଙ୍କଠାରୁ ସେମାନଙ୍କର ମତାମତ ସଂଗ୍ରହ କରାଯାଇପାରିବ ।

ଏକାଡେମୀର କାର୍ଯ୍ୟ ସମ୍ପର୍କରେ ସମସ୍ତେ ଜାଣିଛନ୍ତି । କିନ୍ତୁ କାହାରି ଆଖିରୁ ଲୁହ ବୋହୁ ନାହିଁ । ସମସ୍ତେ ସମାଲୋଚନା କରୁଛନ୍ତି ; କିନ୍ତୁ ତାକୁ ଗଠନ-ମୂଳକ ଭାବରେ କରାଯାଉନି । ଓଡ଼ିଶାରେ ତାହା ଏକମାତ୍ର ସଙ୍ଗଠନ ଯେଉଁଠାରେ ସମସ୍ତ ସାହିତ୍ୟିକ, ଲେଖକ, କବି, ପ୍ରାବନ୍ଧିକ, ନାଟ୍ୟକାର, ଶିଶୁସାହିତ୍ୟ, ଅନୁବାଦ ସାହିତ୍ୟ ଇତ୍ୟାଦିଙ୍କୁ ଏକାଠି କରି ଏକ ନୂତନ ଦିଗ ଦିଆଯାଇପାରିବ । ଏକାଡେମୀର କାର୍ଯ୍ୟ ପରିସର ଯେତେ ବ୍ୟାପକ ହେବ, ଭାଷା ଓ ସାହିତ୍ୟର ବିକାଶ ସେତେ ତ୍ୱରାନ୍ୱିତ ଓ ସମୃଦ୍ଧ ହେବ ।

ବର୍ତ୍ତମାନ ଏ ବିଷୟରେ ଯଥେଷ୍ଟ ପଦକ୍ଷେପ ନେବା ଉଚିତ । କାରଣ ଅପସଂସ୍କୃତିର ବ୍ୟାପକ ପ୍ରଭାବ ଗଣମାଧ୍ୟମ ଜରିଆରେ ଲୋକଚେତନାକୁ ଆଚ୍ଛନ୍ନ କରୁଛି ଏବଂ ଏହା ଆମର ସାହିତ୍ୟ ଓ ସଂସ୍କୃତିକୁ ନଷ୍ଟ କରିଦେବ । ଅପସଂସ୍କୃତିର ଗତିକୁ

ରୋକିବା ପାଇଁ ଏକାଡେମୀ ସଚେତନତା ସମାରୋହ ବିଭିନ୍ନ ଅଞ୍ଚଳରେ ଅନୁଷ୍ଠିତ କରିପାରିବ । ଗତ କିଛିଦିନ ଧରି ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଏକାଡେମୀ ସାହିତ୍ୟସଭା ଅନୁଷ୍ଠିତ କରୁଛି । ଏହା ଏକ ବାସ୍ତବିକ୍ ପଦକ୍ଷେପ । କିନ୍ତୁ ଏହି ପଦକ୍ଷେପକୁ ଗଣଆନ୍ଦୋଳନରେ ପରିଣତ କରିବାର ଆବଶ୍ୟକତା ରହିଛି । କେବଳ ସଭାଟିଏ କରିଦେଲେ ବିଭିନ୍ନ ବକ୍ତାମାନେ କିଛି ଭାଷଣ ଦେଲେ ତା'ର ପ୍ରଭାବ ଲୋକ-ମାନଙ୍କ ଉପରେ ବେଶୀ ପଡ଼ିବ ନାହିଁ । ସାହିତ୍ୟ ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରିବାକୁ ହେବ ।

ସ୍ୱାଧୀନତା ଆନ୍ଦୋଳନ ସମୟରେ ଯେଉଁମାନେ ସାହିତ୍ୟ ସୃଷ୍ଟି କରୁଥିଲେ ଏଯାବତ୍ ସେମାନେ ଆମର ପଥପ୍ରଦର୍ଶକ ହୋଇରହିଛନ୍ତି । ତା'ର୍ କାରଣ ସାହିତ୍ୟ ଗଣଚେତନାକୁ ଉଦ୍‌ବୃଦ୍ଧ କରିବାକୁ ସକ୍ଷମ ହେଉଥିଲା । ସେତେବେଳେ ସେମାନଙ୍କର ପ୍ରଚେଷ୍ଟା ଥିଲା ବ୍ୟକ୍ତିଗତ । ବର୍ତ୍ତମାନ ଏକାଡେମୀ ଏହିପରି କେତେଗୁଡ଼ିଏ କାର୍ଯ୍ୟକ୍ରମ ନେଉ, ଯାହା ଗଣଚେତନାକୁ ଉଦ୍‌ବୃଦ୍ଧ କରିବାରେ ସାହାଯ୍ୟକାରୀ ଭୂମିକା ନେଇପାରିବ ।

ବହୁଦିନରୁ ଅନୁଭୂତ ହେଉଥିବା ଏକାଡେମୀର ନିଜସ୍ୱ ଗୃହ ପାଇଁ ଶିଳାନ୍ୟାସ ହୋଇଛି । ସେ ଗୃହଟି କିପରି ଭାବରେ ସାହିତ୍ୟ ସଂସ୍କୃତିର କେନ୍ଦ୍ରବିନ୍ଦୁ ହେବ, ତା'ର ଏକ ବ୍ୟାପକ ରୂପରେଖ ଏବେଠୁ ପ୍ରସ୍ତୁତ କରିବା ଦରକାର । ତା' ନ ହେଲେ ଏହି ସାରସ୍ୱତ ଭବନଟି ସରକାରଙ୍କର ଆଉ ଏକ କାର୍ଯ୍ୟାଳୟ ଢାଞ୍ଚାରେ ଗଢ଼ିଉଠିବ । ଏଥିପାଇଁ ଇଚ୍ଛାଶକ୍ତିର ଆବଶ୍ୟକ । ଓଡ଼ିଶାର ଅନେକ ବରେଣ୍ୟ ସାହିତ୍ୟିକ ରାଜ୍ୟ ଓ କେନ୍ଦ୍ରରେ ବିଭିନ୍ନ ପଦପଦବୀରେ ଅଧିରୂଢ଼ । ସେମାନେ କେବଳ ନିଜର ସୃଷ୍ଟି ପ୍ରତି ଧ୍ୟାନ ଦେଇ ସାମୁହିକ ସାଂସ୍କୃତିକ ବିକାଶ ପ୍ରତି ଧ୍ୟାନ ନ ଦେଲେ ଓଡ଼ିଆ ସାହିତ୍ୟ ଗୌରବ ଶ୍ରୀମଣ୍ଡିତ ହୋଇପାରିବ ନାହିଁ ।

ସାହିତ୍ୟ ଓ ଭାଷାର ଉନ୍ନତି ପାଇଁ ଏକ ବ୍ୟାପକ ପୃଷ୍ଠଭୂମି ଗଠନ କରିବାର ଦାୟିତ୍ୱ ଏକାଡେମୀର । ଏହି ପୃଷ୍ଠଭୂମି ପ୍ରସ୍ତୁତ ହେଲେ ଆପେ ଆପେ ମନ୍ଦିରମାନ ଗଢ଼ିଉଠିବ । ପରସ୍ପର ଈର୍ଷା, ଦ୍ୱେଷ, ସମାଲୋଚନାରେ ବ୍ୟସ୍ତ ନ ରହି ଆମର ସାରସ୍ୱତ ମନ୍ଦିରଟିକୁ କିପରି ସୁନ୍ଦର ବର୍ଣ୍ଣାଢ଼୍ୟ କରି ଗଢ଼ିତୋଳିବା ତାହା ପ୍ରତ୍ୟେକ ସାରସ୍ୱତ ସାଧକର ଦାୟିତ୍ୱ ଓ କର୍ତ୍ତବ୍ୟ ହେବାବେଳେ ସାହିତ୍ୟ ଏକାଡେମୀ ସମସ୍ତ ସାହିତ୍ୟିକମାନଙ୍କୁ ନେଇ ଭାଷା ସାହିତ୍ୟକୁ ଉଜ୍ଜୀବିତ କରିବାର ସଂକଳ୍ପ ନେଇ କାର୍ଯ୍ୟ କରିବା ଆଜିର ଆବଶ୍ୟକତା । ତାହା ହିଁ କେବଳ ଅପସଂସ୍କୃତିର ଗତିରୋଧ କରିପାରିବ ।

●

# ମାୟାଧର ମାନସିଂହ ବକ୍ତୃତାମାଳା

ଉତ୍କଳ ବିଶ୍ୱବିଦ୍ୟାଳୟର ବାଣିଜ୍ୟ ବିଭାଗ ଗ୍ୟାଲେରୀରେ ମାନସିଂହ ବକ୍ତୃତାମାଳା ନିକଟରେ ଅନୁଷ୍ଠିତ ହୋଇଛି । ଅକ୍ଟୋବର ୨୬ ତାରିଖରେ ଏହି ବକ୍ତୃତାମାଳାର ବିଷୟବସ୍ତୁ ଥିଲା—ଗଦ୍ୟଶିଳ୍ପୀ ଡକ୍ଟର ମାୟାଧର ମାନସିଂହ । ମାନସିଂହ ସମ୍ପର୍କରେ ଆଲୋଚନା କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ ଡକ୍ଟର ନାରାୟଣବନ୍ଧୁ କର କହିଥିଲେ ଯେ ମାୟାଧର ମାନସିଂହ ପ୍ରଥମେ ଗଦ୍ୟ ରଚନା କରିଥିଲେ । ପରବର୍ତ୍ତୀ ସମୟରେ କବିତା ଲେଖି କବି ମାନସିଂହ ଭାବରେ ଖ୍ୟାତ । ତାଙ୍କ ଗଦ୍ୟ ରଚନାର ଶୈଳୀ କବିତ୍ୱପୂର୍ଣ୍ଣ ଗଦ୍ୟ । ତାଙ୍କ ଗଦ୍ୟର ବିଶେଷ ଦିଗ ପ୍ରବନ୍ଧରେ ଆତ୍ମପ୍ରତ୍ୟୟ ଓ ବ୍ୟକ୍ତିତ୍ୱର ମହନୀୟ ଦିଗ ଦେଖିବାକୁ ମିଳେ ।

ତାଙ୍କର ପ୍ରତ୍ୟେକ ଲେଖାରେ ଶବ୍ଦକଳ୍ପ ପର୍ଯ୍ୟାପ୍ତ ଓ ଭାଷାର ବ୍ୟବହାର ସେହି ଲେଖାକୁ ରୁଚିସମ୍ପନ୍ନ କରିଛି । ଯେ କେହି ପାଠକ ତାଙ୍କର ପ୍ରବନ୍ଧ ପଢ଼ି ମାନସିଂହ କବିଙ୍କୁ ଆବିଷ୍କାର କରିପାରେ । ତାଙ୍କ ପ୍ରବନ୍ଧରେ ଯେପରି ଭାବରେ ମାନବିକ ଆଦର୍ଶ ଉପସ୍ଥାପିତ, ତାହା ଅନନ୍ୟ । ଦାରିଦ୍ର୍ୟ ସହିତ ଲଢ଼ି ବଡ଼ ମଣିଷ ହେବାରେ ପୁରୁଷାକାର, ସାଧୁତାର ସହିତ କର୍ତ୍ତବ୍ୟ ସମ୍ପାଦନ, ଅନ୍ୟ ପ୍ରତି ସହାନୁଭୂତିଶୀଳ ଇତ୍ୟାଦି ବିଷୟର ତାଙ୍କ ଲେଖାର ଆଦର୍ଶବୋଧ ସୂଚିତ କରେ । ଏହି ଯୋଗୁ ତାଙ୍କର ଆତ୍ମଜୀବନୀ ଅନ୍ତଦୃଷ୍ଟିର ଦୀର୍ଘଶ୍ୱାସ କହିଲେ ଭୁଲ ହେବନି ।

ମାନସିଂହ ବକ୍ତୃତାମାଳାର ସେହି ସନ୍ଧ୍ୟା ବେଶ୍ ଉପଭୋଗ୍ୟ ହୋଇଥିଲା । ସ୍ମାରକ ବକ୍ତୃତା ଆୟୋଜନର ଆବଶ୍ୟକତା ରହିଛି । ଏହା ବିଶ୍ୱ-ବିଦ୍ୟାଳୟମାନଙ୍କରେ ବେଶୀ ବେଶୀ ହେବା ଉଚିତ । ଏ ଦିଗରେ ଅଧ୍ୟାପକମାନେ ଅଧିକ ସହଶୀଳ ହେଲେ ଛାତ୍ରମାନେ ଆକୃଷ୍ଟ ହେବେ । କିନ୍ତୁ ଦିଗଟି ପ୍ରତି ବିଶେଷ ଦୃଷ୍ଟି ଦିଆଯାଇପାରୁ ନାହିଁ । ଯେଉଁ ଯେଉଁ ସ୍ମାରକ ବକ୍ତୃତା ପାଇଁ ଅର୍ଥର ବ୍ୟବସ୍ଥା ରହିଛି ବିଶ୍ୱ-ବିଦ୍ୟାଳୟ କର୍ତ୍ତୃପକ୍ଷ ତାକୁ ଅଲଗା ପାର୍ଶ୍ୱରେ ରଖିନାହାନ୍ତି । ସ୍ମାରକ ବକ୍ତୃତା ପ୍ରତି ଅଧ୍ୟାପକମାନଙ୍କର ବିଶେଷ ଆଗ୍ରହ ନାହିଁ । କାରଣ ବକ୍ତୃତାମାଳା ଦିନ ସେହି ହଲ୍‌ରେ କେବଳ କେତେକ ମୁଷ୍ଟିମେୟ ଅଧ୍ୟାପକଙ୍କ ଉପସ୍ଥିତି ଲକ୍ଷ୍ୟ କରିଯାଏ ।

ଏହି ପ୍ରସଙ୍ଗରେ ସ୍ୱାମୀ ବିବେକାନନ୍ଦ ବକ୍ତୃତାମାଳା ସମ୍ପର୍କରେ ଉଲ୍ଲେଖ କରାଯାଇପାରେ । ରାମକୃଷ୍ଣ ମଠ ଦ୍ୱାରା ପ୍ରଦତ୍ତ ଅର୍ଥରେ ଆୟୋଜିତ ଏହି ସ୍ମାରକ ବକ୍ତୃତା ଦେବାକୁ ବହୁ ସୁନାମଧନ୍ୟ ସନ୍ନ୍ୟାସୀମାନେ ପ୍ରତ୍ୟେକ ବର୍ଷ ଆସନ୍ତି, ମାତ୍ର ଶ୍ରୋତା ସୀମିତ । ଅଧ୍ୟାପକମାନଙ୍କର ଅନାଗ୍ରହ, ବକ୍ତୃତା ଆୟୋଜନର ଅନିୟମିତତା ପ୍ରଚାର ମାଧ୍ୟମରେ ବିନିଯୋଗ ନ ହେବା ଫଳରେ ବିଶ୍ୱବିଦ୍ୟାଳୟର ସ୍ମାରକ ବକ୍ତୃତା କେବଳ ଉପଚୈକନ । ଏହାର କୌଣସି ପ୍ରଭାବ ପଡ଼େ ନାହିଁ ।

ମାନସିଂହ ବକ୍ତୃତାମାଳା ସଭାରେ ସଭାପତିତ୍ୱ କରୁଥିବା କୁଳପତି ଡକ୍ଟର ଦାସ କହିଥିଲେ ଯେ ସ୍ମାରକ ବକ୍ତୃତା ପ୍ରତି ଗୁରୁତ୍ୱ ଦିଆଯିବ । ଏହା ବେଶ୍ ଆନନ୍ଦର କଥା । ଅର୍ଥ ବ୍ୟବସ୍ଥାରେ କୌଣସି ଅସୁବିଧା ନାହିଁ । ବିଭିନ୍ନ ବ୍ୟକ୍ତିବିଶେଷ ଅଛନ୍ତି ଯେଉଁମାନେ ଓଡ଼ିଶାର ବରପୁତ୍ରଙ୍କ ନାମରେ ଅର୍ଥ ଦେବାକୁ ପଶ୍ଚାତ୍ପଦ ନୁହନ୍ତି; କିନ୍ତୁ ଯଦି ତାହାର ସଦୁପଯୋଗ ନ ହୁଏ, ତେବେ କିଏ କାହିଁକି ଅର୍ଥ ଦେବ ?

ମାନସିଂହ ସ୍ମାରକ ବକ୍ତୃତା ଆୟୋଜନର ଦାୟିତ୍ୱ ଗ୍ରହଣ କରିଛନ୍ତି ଡକ୍ଟର ସୂର୍ଯ୍ୟକାନ୍ତ ଦାସ ଓ ବାଣିଜ୍ୟ ବିଭାଗ । ଡକ୍ଟର ସୂର୍ଯ୍ୟକାନ୍ତ ଦାସଙ୍କର ନିଷ୍ଠାଯୋଗୁ ଏହାର ପ୍ରଥମ ସ୍ମାରକ ବକ୍ତୃତା ବେଶ୍ ସଫଳ ହୋଇଥିଲେ ମଧ୍ୟ ଏହା ବେଶୀ ପ୍ରଚାର ଲାଭ କରିପାରିନି । ଏଥିପ୍ରତି ଆଗାମୀ ଦିନରେ ଗୁରୁତ୍ୱ ଦେବାକୁ ହେବ ।

ଉତ୍କଳ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ସ୍ମାରକ ବକ୍ତୃତାମାଳାକୁ କିପରି ଭାବରେ ସୁସଙ୍ଗଠିତ କରିପାରିବେ, ତାହା ଆଗାମୀ ଦିନମାନଙ୍କରୁ ଜଣାପଡ଼ିବ ।



# ଦଗପହଣ୍ଡିର ଡ୍ରଇଂ ମାଷ୍ଟ୍ରେ

ଦଗପହଣ୍ଡିର ଡ୍ରଇଂ ମାଷ୍ଟ୍ରେ ଏକ ଆତ୍ମଜୀବନୀ । ହଠାତ୍ ପଢ଼ିଲେ ଏହା ଆତ୍ମଜୀବନୀ ବୋଲି ଜଣାଯାଏନି । କିନ୍ତୁ ଡ୍ରଇଂ ମାଷ୍ଟ୍ରେ ଯେ ନିଜେ ଦୀନନାଥ ପାଠୀ ଏବଂ ସେ ମଧ୍ୟ ଦଗପହଣ୍ଡିର ଡ୍ରଇଂ ମାଷ୍ଟ୍ରେ ଏହା ସହଜରେ ବୁଝାପଡ଼େ । ଏଇ ବହିଟିକୁ ପଢ଼ିବାର ହଠାତ୍ ସୁଯୋଗ ମିଳିଲା ଯେଉଁଦିନ ଡକ୍ଟର ପାଠୀଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ କେତେଗୁଡ଼ିଏ ଅନୁରୋଧ ଟେଲିଫୋନ୍‌ରେ ପାଇଲି । ମହେନ୍ଦ୍ର ମିଶ୍ରଙ୍କ ବଗିଚା ଘରେ ସଂଧ୍ୟାବେଳେ ଅନେକ ଶିଳ୍ପୀ, ସାହିତ୍ୟିକଙ୍କ ମେଳରେ ଦଗପହଣ୍ଡିର ଡ୍ରଇଂ ମାଷ୍ଟ୍ରେ ପୁସ୍ତକର ଲେଖକ ଡକ୍ଟର ଦୀନନାଥ ପାଠୀଙ୍କୁ ସଶ୍ରଦ୍ଧ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଇବାକୁ ଅନେକ ଗଣ୍ୟମାନ୍ୟ ଲେଖକ ମହଜୁଦ ଥିଲେ । ଏ ବହିଟି ପାଇଛି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଏବଂ ଡକ୍ଟର ପାଠୀ ଜଣେ ଶିଳ୍ପୀ ଭାବେ ବୋଧହୁଏ ଏକାଡେମୀ ପୁରସ୍କାର ପାଇବାରେ ପ୍ରଥମ, ତାହା ପୁଣି ସାହିତ୍ୟ ପାଇଁ ।

ଶିଳ୍ପୀ ଓ ନାଟ୍ୟ ନିର୍ଦ୍ଦେଶକ ଅସୀମ ବସୁଙ୍କ ନିର୍ଦ୍ଦେଶନାରେ ସମ୍ବର୍ଦ୍ଧନା ପର୍ବର ଆରମ୍ଭ ହେଲା । ଜଣକ ପରେ ଜଣେ କହିଲେ । କିଏ ଅଳ୍ପ ସମୟ ଓ ଅନ୍ୟ କେହି ବେଶୀ ସମୟ । ପ୍ରଶଂସାର ମହୁମାନ ବର୍ଷିଦେଲେ । ଡକ୍ଟର ଦୀନନାଥ ପାଠୀ ତା'ର ଉତ୍ତରରେ ତାଙ୍କର ସ୍ୱଭାବସୁଲଭ ବ୍ୟଙ୍ଗମିଶା କଥାରେ ସେ କେମିତି ଲେଖିଲେ ଓ କାହିଁକି ଲେଖିଲେ ବଖାଣିଲେ; ଯାହାକୁ ସେ ବହିରେ 'ମାଷ୍ଟ୍ରେଙ୍କ କହିବା କଥା' ମଧ୍ୟରେ କହି ସାରିଛନ୍ତି । ଯେଉଁମାନେ କହିଲେ ସେମାନଙ୍କ ମଧ୍ୟରେ ଥିଲେ ଗାଳ୍ପିକ ଦାଶ ବେନହୁର, ଅଧ୍ୟାପକ ରାଜେନ୍ଦ୍ର ପ୍ରସାଦ ଦାସ, କୁଳପତି ଡକ୍ଟର ଗୌର କିଶୋର ଦାସ, କବି ରମାକାନ୍ତ ରଥ, କବି ପ୍ରତିଭା ଶତପଥୀ ଓ ଅନ୍ୟମାନେ । ଏହି ବହିଟି ଇଂରାଜୀରେ ଅନୁବାଦ ହୋଇ ପ୍ରକାଶ ପାଇବ ଓ ତା'ର ଇଂରାଜୀ ଅନୁବାଦ କୁଳପତି ମହାଶୟ ପଢ଼ି ସୁନ୍ଦର ତର୍ଜମା କଲେ ।

ଏପରି ଏକ ଜୀବନୀ କାହିଁକି ସେ ଲେଖିଲେ, ତା'ର ସୂଚନା ସେ ପ୍ରଥମେ ଦେଇଛନ୍ତି । "କଇଁଚ ପିଠିରେ ବୟସ ଯାଉଚି । ଚାଳିଶି ପାର ହୋଇ ପଚାଶ ପାଖେଇଲଣି । ମୋର କେତେ ଜଣ ବନ୍ଧୁ କହିଲେ, ମାଷ୍ଟ୍ରେ ! ତମର ଜୀବନୀ ଲେଖିବା ବେଳ ଆସିନି । ବ୍ୟସ୍ତ କାହିଁକି ? ପିଲାବେଳେ ସ୍କୁଲରେ ପଢୁଥିବା

ବେଳେ ନିଜକୁ ଓଟ ମନେକରି, ଗାଧ ମନେକରି ବହୁ ରଚନା ଲେଖିଛୁ । ଏଣୁ ଅନ୍ତତଃ ନିଜକୁ ଡ୍ରଇଂ ମାଷ୍ଟ୍ରେ ମନେକରି ଏବେ ରଚନା ଲେଖିଲେ ବା କ୍ଷତି କ'ଣ ?"

ଦିଗପହଣ୍ଡି ସମ୍ପର୍କରେ ଏକ ସୂଚନା ଏଇ ବହିଟିରୁ ମିଳେ । ଦିଗପହଣ୍ଡି ଓ ଡ୍ରଇଂ ମାଷ୍ଟ୍ରେ ଉଭୟ ପରସ୍ପରର ପରିପୂରକ ଏକଥା ବାରମ୍ବାର ଲେଖକ କହିଛନ୍ତି । ଏଇ କହିବା ଭିତରେ କୌଣସି ମନଗଢ଼ା କଳ୍ପନା ଥିବାପରି ମନେହୁଏନା । ଦିଗପହଣ୍ଡି ନିକଟରେ ଏକ ବିରାଟ ପୁଷ୍କରିଣୀ ରହିଛି; ଏହାକୁ ସେଠାକାର ଲୋକେ ବଡ଼ବନ୍ଧ କହନ୍ତି । ସେହି ବଡ଼ବନ୍ଧର ସ୍ମୃତିଚାରଣ କରି ଲେଖକ ଲେଖିଛନ୍ତି, "ଆଜିକାଲି ବେଳେ ବେଳେ ଜହ୍ନରାତିରେ ବଡ଼ବନ୍ଧର ପଥର ପାହାଚ ଉପରେ ବସି କେବଳ ଅତୀତକୁ ମନେ ପକାଇ ଦୀର୍ଘଶ୍ୱାସ ଛାଡ଼ିବା ବ୍ୟତୀତ ଅନ୍ୟ କିଛି କରିବାର ନାହିଁ । ଏଇ ଘାଟ ଉପରେ ବସିଲେ ଦେଖିହୁଏ ବହୁଦିନରୁ ପରଲୋକ ଗମନ କରିଥିବା ଗାଁ'ର ଅନେକ କକା, ଦାଦା, ନନା, ଭାଇନା—ତେନ୍ତୁଳିପଣ ଓ ପଟୁମାଟି ମିଶାଇ ପିତ୍ତଳ ଡାଳକୁ ସୁନାଭଳି ଚକ୍ ଚକ୍ କରି ଗାଧୁଆ ସାରି ମନ୍ତ୍ରୋଚ୍ଚାରଣ କରି ଫେରୁଛନ୍ତି । ପାଣିରେ ପୁରା ଜୁଡ଼ୁବୁଡ଼ୁ ହୋଇ ହାତେ ଓଢ଼ଣା ତଳକୁ ଟାଣି ଅସୂର୍ଯ୍ୟଂପଶ୍ୟା ନୂଆ ବୋହୂମାନେ କାଖରେ ଗରା ମାଠିଆ ନେଇ ଘରକୁ ଫେରୁଛନ୍ତି । ଗୋଟିଏ ବିରାଟ ଜନବସତିର ସଂସ୍କୃତିକୁ ବାନ୍ଧି ବିସ୍ତାରି ଧରି ରଖିଥିବା ଏହି ବଡ଼ବନ୍ଧର ହାତ ଶିଥିଳ ହୋଇ ଯାଇଛି । ନିଜକୁ ପୂର୍ବପୁରୁଷଙ୍କ ଠାରୁ ଉନ୍ନତ ଭାବୁଥିବା ଲୋକମାନେ ଏହାର ମହନୀୟତାକୁ ନଷ୍ଟ କରି ସାରିଛନ୍ତି ।" ଏକ ସାଂସ୍କୃତିକ କେନ୍ଦ୍ରକୁ ମାଛଗୋଦାମ କରି ସାରିଛନ୍ତି । ଲେଖକଙ୍କର ଏ ବକ୍ତବ୍ୟ ଅତ୍ୟନ୍ତ ଚମତ୍କାର ଓ ସଠିକ୍ ।

ଜୀବନୀ ପୁସ୍ତକଟିରେ ନିଜ ଗାଁ, ଘର ପରିବେଶ ଓ ଚରିତ୍ରମାନଙ୍କର ସମାବେଶ ଓ ସମାହାର ଏବଂ ସେମାନଙ୍କର ବହିଟିକୁ ପୁଷ୍ଟ କରିବାରେ ଉଲ୍ଲେଖନୀୟ ଯୋଗଦାନ ବହିଟିକୁ ଏକ ଉଚ୍ଚକୋଟୀର ଆତ୍ମଜୀବନୀ ପର୍ଯ୍ୟାୟକୁ ଉନ୍ନୀତ କରିଛି । ଏ ପୁସ୍ତକଟି ସ୍ୱୟଂସମ୍ପୂର୍ଣ୍ଣ ହୋଇଥିଲେ ହେଁ ତିନୋଟି ପୁସ୍ତକରେ ଜଣେ ଓଡ଼ିଆ ଚିତ୍ରକରର ନିଜକଥା ବୋଲି ବିଜ୍ଞାପନ ଦିଆଯାଇ ଆଉ ଦୁଇଟି ବହି ପ୍ରକାଶ ଅପେକ୍ଷାରେ ରହିଛି କୁହାଯାଇ ପୁସ୍ତକଟିର ଗୁରୁତ୍ୱକୁ ହ୍ରାସ କରାଯାଇଛି । ସେହିପରି ପ୍ରଚ୍ଛଦପଟରେ 'ଦୀନନାଥ' କିନ୍ତୁ ବହି ଭିତରେ 'ଦିନନାଥ' ଲେଖିବା ଦ୍ୱାରା ଲେଖିବା ଜନିତ ତ୍ରୁଟି ବାରି ହୋଇପଡ଼ୁଛି ।

ଡକ୍ଟର ଦୀନନାଥ ପାଠୀଙ୍କ ସମ୍ବର୍ଦ୍ଧନା ଉତ୍ସବର ସେହି ଦିନ ସଂଧ୍ୟା ସାହିତ୍ୟ ପ୍ରତି ଶିଳ୍ପୀମାନଙ୍କର ଆଗ୍ରହ ଓ ସ୍ୱୀକୃତିର ସଂଧ୍ୟା ବୋଲି କୁହାଯାଇପାରେ । ●

# ଓଡ଼ିଆ କବିତାର ନବପର୍ବ

ଓଡ଼ିଆ କବିତାର ନବପର୍ବ କହିବା ମାତ୍ରେ ମନରେ ଉତ୍କଣ୍ଠା ଓ ଆଗ୍ରହ ଜନ୍ମିବା ସ୍ୱାଭାବିକ । କାରଣ ନୂତନ ପିଢ଼ିର କବିମାନଙ୍କର ଲେଖା ଏଥିରେ ଥିବ ଏବଂ ସେମାନେ କ'ଣ କେମିତି ଲେଖିଥିବେ, ଏହା ଜାଣିବା ପାଇଁ ଆଗ୍ରହ । ରାଜଧାନୀ ଭୁବନେଶ୍ୱରଠାରେ ସମସାମୟିକ ଓଡ଼ିଆ କବିତାର ନବପର୍ବ ପତ୍ରିକାଟିଏ ଉନ୍ମୋଚନ ହେଲା । ପତ୍ରିକା ଉନ୍ମୋଚନ ହେବାରେ କୌଣସି ଅସ୍ୱାଭାବିକତା ନାହିଁ । ପ୍ରତ୍ୟେକ ଦିନ କେତେ ପତ୍ରିକା ଉନ୍ମୋଚନ ହେଉଛି ଏବଂ ସେମାନେ ସେହି ଗତାନୁଗତିକ ଧାରାରେ ଚାଲିଛନ୍ତି । ଗତାନୁଗତିକ ସେମାନଙ୍କ ନିମିତ୍ତ ସହଜାତ ପ୍ରବୃତ୍ତି ଓ ପରିଣତ ହୋଇଯାଉଛି । କାରଣ ନୂଆ ରାସ୍ତାଟିଏ ଦେଖାଇବା ଆଦୌ ସହଜ ନୁହେଁ ।

ସମସାମୟିକ କବିତାର ନବପର୍ବ ପତ୍ରିକା ଉନ୍ମୋଚନ ଉତ୍ସବରେ ଆସନ ଅଳଂକୃତ କରିଥିଲେ କବି ରମାକାନ୍ତ, ସୌରୀନ୍ଦ୍ର ଓ ହରିହର । ସ୍ୱକୀୟ ଗୁଣ ଓ ସାଧନାରେ ଶ୍ରୀମନ୍ତ । ଏକ ଭାବଗମ୍ଭୀର ପରିବେଶ ମଧ୍ୟରେ ବହୁ ନୂତନ ଶ୍ରୋତୃମଣ୍ଡଳୀ ସମ୍ମୁଖରେ କବି ସୌରୀନ୍ଦ୍ର ପତ୍ରିକାଟି ଉନ୍ମୋଚନ କରିବା ପରେ ପତ୍ରିକାର କଳେବର, ଆଙ୍ଗିକ ଓ ଆତ୍ମିକ ଦେଖିବାର ସୁଯୋଗଟି ମିଳିଗଲା ।

ଷଣ୍ମାସିକ ଏହି କବିତା ପତ୍ରିକା କବିଦ୍ୱୟଙ୍କ ସମ୍ପାଦନାରେ ପ୍ରଥମ ଥର ନୂତନ ସୂର୍ଯ୍ୟାଲୋକ ଦେଖିଲା ଓ କେତେ ସୂର୍ଯ୍ୟାଲୋକ ଆଗାମୀ ଦିନରେ ଦେଖିବ, ତାହା ଦେଖିବାକୁ ବାକି ରହିଲା । ତଥାପି ଆଶାର ଆଲୋକ ନେଇ ଚାଲିବାବେଳେ ଏହି ପତ୍ରିକାଟିରେ କିଛି ନୂତନତା ନିଶ୍ଚିତ ମନକୁ ଆନନ୍ଦ ଦେବା ସହିତ ପଢ଼ିବା ପାଇଁ ଆଗ୍ରହ ସୃଷ୍ଟି କଲା । ସମସାମୟିକ ସୂଚୀରେ ତିନିଜଣ ବିଶିଷ୍ଟ କବି ତିନିଗୋଟି ଭିନ୍ନ ଭିନ୍ନ ଶିରୋନାମାରେ ସ୍ଥାନ ପାଇଥିଲେ—କାବ୍ୟ ସନ୍ଧ୍ୟାରେ କବି ରମାକାନ୍ତ ରଥ, କବି ପ୍ରସଙ୍ଗରେ କବି ଜୟନ୍ତ ମହାପାତ୍ର ଓ କବି ସମ୍ମାନରେ କବି ସଚ୍ଚି ରାଉତରାୟ ।

କବି ଜୟନ୍ତ ମହାପାତ୍ରଙ୍କ ସହିତ ଓ କବି ରମାକାନ୍ତଙ୍କ ସହିତ ଥିଲା ଦୁଇଟି ସାକ୍ଷାତ୍‌କାର । କବିମାନଙ୍କର କେତେଗୁଡ଼ିଏ କବିତା । ସାହିତ୍ୟ ସମ୍ବାଦ ପରି ପୁରସ୍କାର ପାଇଥିବା, ସମ୍ମାନିତ ହୋଇଥିବା ଭାରତୀୟ ଓ ବିଶ୍ୱ ସାହିତ୍ୟର କବି ପରିଚିତି ଇତ୍ୟାଦି । କବିମାନଙ୍କ ସମ୍ପର୍କରେ ବିଶେଷ ଜଣାଇବା ଏହି ପତ୍ରିକା

ଓଡ଼ିଆ ପତ୍ରିକାର ନବପର୍ବ ଏଥିପ୍ରା ସ୍ପଷ୍ଟ ବାରହୋଇପଡ଼ୁଥିଲା ଏବଂ ଏଥିର ବିଶେଷତା ସମ୍ପାଦକୀୟ ମନ୍ତବ୍ୟରେ କବି ଅକ୍ଷୟ ବେହେରା ଘୋଷଣା କରିଛନ୍ତି । ତାଙ୍କ ଭାଷାରେ, "ଆଜିର ବସ୍ତୁନିଷ୍ଠ ସମାଜରେ ସାହିତ୍ୟ ଓ ସମାଜସେବା ପ୍ରତି ଏଥିର ଦୁର୍ଭାଗ୍ୟଜନକ ଆଶଙ୍କା ସତ୍ତ୍ୱେ ଏ ବାଗରେ ଆଗେଇ ଆସିବାବେଳେ ଆମର ପ୍ରତିଶ୍ରୁତି ଓ ଅଙ୍ଗୀକାର ପ୍ରତି ଆମେ ନିଷ୍ଠାବାନ୍... ।" କବି ଅକ୍ଷୟ ବେହେରାଙ୍କ ଉଣ୍ଡ ପୁରୁଣ୍ଡ ହେବା ଏବଂ ଗଠନମୂଳକ ପଦକ୍ଷେପ ପାଇଁ ସେମାନଙ୍କର ପ୍ରତିଶ୍ରୁତିବଦ୍ଧ ବକ୍ତବ୍ୟ ସତ୍ୟତା ରଖୁ ।

କାବ୍ୟ ସନ୍ଧ୍ୟାରେ କବି ରମାକାନ୍ତ ଖେଦୋକ୍ତି ପ୍ରକାଶ କରି କହିଛନ୍ତି, "ଯେଉଁ ସମାଜରେ କିଣିପାରିବାର ସାମର୍ଥ୍ୟ ହିଁ ମାନ୍ୟତାର ନିରୂପକ ଓ ନ କିଣି-ପାରିବାର ହତାଶା ସର୍ବପ୍ରଧାନ ହତାଶା, ସେ ସମାଜରେ କବିତା ଆଗଭଳି ଆଦର ପାଇପାରିବ ନାହିଁ । ଏତେ ଅନାଦରରେ କବିତା ତିଷ୍ଠି ରହିବ ତ ?" କବି ରମାକାନ୍ତଙ୍କର ଏ ପ୍ରକାର ମନ୍ତବ୍ୟ ସହିତ ଆମେ ସହମତ ନୋହୁ । କିଣିପାରିବାର ସାମର୍ଥ୍ୟ ଅତୀତରେ ନ ଥିବା ସତ୍ତ୍ୱେ କବିତା ଆଗରୁ ଆଦର ପାଉଥିଲା ଏବଂ ଏବେ ମଧ୍ୟ ଆଦର ପାଉଛି । ତେଣୁ କବିତା ପ୍ରତି ଅନାଦର କେବେହେଲେ ନ ଥିଲା । ସଂପ୍ରତି କବିତା ପ୍ରତି ଅନାଦର ହେବା ମୂଳରେ ନ କିଣିପାରିବାର ହତାଶା ନୁହେଁ, ବରଂ ନ ବୁଝିପାରିବାର ଦୁଃଖରେ ପାଠକ ମର୍ମାହତ । ସମାଜ ପ୍ରତି କବିତାର ଅଙ୍ଗୀକାରବଦ୍ଧତା ଓ ପ୍ରତିଶ୍ରୁତିବଦ୍ଧତାର ଅଭାବବୋଧ ପାଠକକୁ କବିତା ନିକଟରୁ ଦୂରେଇ ନେଉଛି । କବିତା ପ୍ରତି ହେଉଥିବା ଏ ପ୍ରକାର ସମାଲୋଚନାକୁ ଭୁଲି ଯିବା ଠିକ୍ ହେବନି ।

ସମାଲୋଚନା ସମ୍ପର୍କରେ କହିବାକୁ ଯାଇ କବି ରମାକାନ୍ତ ବୃତ୍ତି ଓ ସୃଜନଶୀଳତା ସମ୍ପର୍କରେ ମତ ଦେଇଛନ୍ତି ଯେ, ସାହିତ୍ୟର ବିଚାରରେ ବୃତ୍ତି ଅପ୍ରାସଙ୍ଗିକ । ତାଙ୍କର ଏ ମତ ହୁଏତ ଠିକ୍ ହୋଇପାରେ, ମାତ୍ର ବୃତ୍ତି ଦ୍ୱାରା ବ୍ୟକ୍ତିଟିଏ ତିଆରି ହୁଏ କାହିଁକି ? ବ୍ୟକ୍ତିଟି ଯେପରି ହେବ, ତାହାର ସୃଜନଶୀଳତା ସେପରି ହେବ କାହିଁକି ? ବୃତ୍ତିକୁ ଧରି ସାହିତ୍ୟରେ ପୁରସ୍କାର ପାଇବା ଘୋର ଅପଲାପ ହେଲେ ମଧ୍ୟ ଅସତ୍ୟ ନୁହେଁ ।

ସମସାମୟିକ ଓଡ଼ିଆ କବିତାର ନବପର୍ବ ଆଗାମୀ ଦିନ ପାଇଁ ଯେଉଁ ନୂତନ ସମ୍ଭାବନା, ନୂତନ ବିଚାରଧାରା ଓ ନୂତନତା ଆଣିବ ତାକୁ ଦେଖିବାକୁ ଅପେକ୍ଷା କରିବାବେଳେ କବି ଜୟନ୍ତଙ୍କର ଉପରୋକ୍ତ ଉକ୍ତିଟି ପ୍ରତି ଗମ୍ଭୀର ଅନ୍ତର୍ଦୃଷ୍ଟି ଦେଇ ବିଚାର ଓ କାର୍ଯ୍ୟ କରିବେ ବୋଲି ଆମେ ଆଶା ରଖୁଛୁ ।



# ଶଙ୍ଖ ସଂପାଦକ

ବୈକୁଣ୍ଠ ବାବୁ ଗ୍ଲଲଗଲେ । ଏହି ସମ୍ବାଦଟି ମୋତେ ବିସ୍ମିତ ଓ ଦୁଃଖିତ କରିଦେଲା । 'ଶଙ୍ଖ' ପତ୍ରିକାର ସଂପାଦକ ଭାବେ ଜଣାଶୁଣା ବୈକୁଣ୍ଠନାଥ ରାଜତ ବହୁଦିନରୁ ବାପୁଜୀନଗରରେ ରହି 'ଶଙ୍ଖ' ପତ୍ରିକା ପ୍ରକାଶ କରୁଥିଲେ । କେତେ ବର୍ଷଧରି ଏହି ପତ୍ରିକାଟି ସହିତ ମୁଁ ଯେ ସଂପୃକ୍ତ ତାହା ମୋର ମନେ ନଥିଲେ ହେଁ ବୈକୁଣ୍ଠବାବୁଙ୍କ ସହିତ ସଂପର୍କଟି ନିବିଡ଼ ହୋଇ ଯାଇଥିଲା । ପ୍ରତ୍ୟେକ ମାସ ବାହାର କରିବାକୁ ଇଚ୍ଛାକରି ବାହାର କରିପାରୁ ନଥିବା ଏହି କ୍ଷୁଦ୍ର କଳେବର ବିଶିଷ୍ଟ ପତ୍ରିକା 'ଶଙ୍ଖ' କେତେଗୁଡ଼ିଏ ଗଳ୍ପ ଓ କବିତା ସହିତ ପ୍ରତ୍ୟେକ ବର୍ଷ ଅନ୍ୟୂନ ପକ୍ଷେ ଚାରି ପାଞ୍ଚୋଟି ସଂଖ୍ୟା ପ୍ରକାଶ ପାଉଥିଲା । ଏହାର ମୂଳରେ ଥିଲା ପତ୍ରିକା ପ୍ରକାଶନ ପାଇଁ ଆର୍ଥିକ ଅଭାବ । ଗୋଟିଏ ଦୁଇଟି ବିଜ୍ଞାପନ ସଂଗ୍ରହ କରିବା ବୈକୁଣ୍ଠ ବାବୁଙ୍କ ପାଇଁ ଥିଲା କଷ୍ଟକର ବ୍ୟାପାର । କିନ୍ତୁ ସାହିତ୍ୟ ପ୍ରତି ଏକାନ୍ତ ଅନୁରକ୍ତି, ପ୍ରୀତି ଥିବା ମଣିଷଟିଏ ବୈକୁଣ୍ଠବାବୁ କୌଣସି ଅସୁବିଧାରେ ଦବିଯିବା ଲୋକ ନଥିଲେ । ବିଳମ୍ବ ହୋଇପାରେ, କିନ୍ତୁ ଶଙ୍ଖ ବାହାରିବ । କୌଣସି ସଭାସମିତିକୁ ଯିବା ତାଙ୍କ ପକ୍ଷରେ ସମ୍ଭବ ହେଉନଥିଲା । ମନରେ ସାହିତ୍ୟିକ-ମାନଙ୍କ ପ୍ରତି ଥିଲା ଶ୍ରଦ୍ଧା, ପ୍ରେମ ଓ ଅନୁରାଗ ।

ପ୍ରତ୍ୟେକ ଦିନ ମୋ ସହିତ ଦେଖା ହେବାବେଳେ କହିବେ, "ଆପଣଙ୍କ ଲେଖାଟି କୁଆଡ଼େ ଗଲା ? ଆର୍ଯ୍ୟ ସଂସ୍କୃତିର ପ୍ରତୀକ ଶ୍ରୀରାମଚନ୍ଦ୍ର ଲେଖାଟି ଆଣିଦେବେ । ତାକୁ କମ୍ପୋଜ କରିବା । ଆଉ କାହାକୁ କାହାକୁ ଗଳ୍ପ ଦେବାକୁ କହିବେ ।" ଲେଖା ଛପାହେବା ପୂର୍ବରୁ ସେଗୁଡ଼ିକ ଆଣି ମୋତେ ଦେଖାଇ କହିବେ, "ଆପଣ କିଛି ବାଛି ଦେବେ ?" ମୁଁ କିଛି,ବାଛି ପାରେନା । ମୋ ପାଖରେ ସମୟ ତ ନଥାଏ । ପୁନର୍ବାର ଫେରାଇ ଦେଇ କହେ, "ଛାପି ଦିଅନ୍ତୁ ।"

ବାସ୍ ସେତିକରେ ଛପାକାର୍ଯ୍ୟ ଆରମ୍ଭ ହୋଇଯାଏ । କେଡ଼େ ସରଳ, ନିଷ୍କପଟ ମଣିଷଟି, ନ ଦେଖିଲେ ବିଶ୍ୱାସ କରିହେବନି । କାହାକୁ ଦିନେ ରାଗିକରି କଥା କହିବାର କେହି ଦେଖି ନଥିବେ । 'ଶଙ୍ଖ' ପତ୍ରିକାଟିକୁ ଯାହା ସହିତ ଦେଖାହେବ, ତା' ହାତକୁ ବଢ଼ାଇ ଦେବେ । ପଇସା ମାଗିବେ ନାହିଁ ।

ତାଙ୍କ ମୃତ୍ୟୁର ଠିକ୍ ଦୁଇଦିନ ପୂର୍ବରୁ ସେ ଆସି କହିଲେ, "ଗୋଟିଏ ବିଶେଷ ଗଳ୍ପ ସଂଖ୍ୟା ପ୍ରକାଶ କରିବା । ଆପଣ ନୂଆ ଗପଟିଏ ଦେବେ ।" ଗଳ୍ପ ବିଶେଷାଙ୍କ ପ୍ରକାଶ କରିବା ହେଲାନି । ସେ ଆମକୁ ଛାଡ଼ି ଚାଲିଗଲେ । ଗଳ୍ପପୂର୍ବରୁ ଦେଖା ଓ ସାକ୍ଷାତ ମଧ୍ୟ ହୋଇ ପାରିଲା ନାହିଁ । ଏପରି ଚାଲିଯିବେ ବୋଲି କିଏ ଜାଣିଥିଲା ? 'ଶଙ୍ଖ' ପତ୍ରିକାକୁ ସଜାଡୁଥିବା ବେଳେ ଟିକିଏ ନିଦ ଲାଗିଲା ଓ ସେହି ନିଦ୍ରା ଚିରନିଦ୍ରାରେ ପରିଣତ ହେଲା ।

ସହୃଦୟ ବନ୍ଧୁଟିଏ, ଦରଦୀ ମଣିଷଟିଏ ହରାଇବା କେତେ କଷ୍ଟ ତାହା ଅନୁଭବୀ ହିଁ ଜାଣେ । ବୈକୁଣ୍ଠବାବୁଙ୍କୁ କାଛ ଦେଇ ପାରିନଥିବା, ତାଙ୍କର ସ୍ନେହ ଓ ମମତାରେ କିଣି ହୋଇ ରହିଥିବା ଏଇ ମନ ସବୁବେଳେ ଯେ ତାଙ୍କୁ ଝୁରି ହେବ, ଯଦିଓ ସେ ଆଉ ସଂସାରରେ ଫେରିବେ ନାହିଁ ।

'ଶଙ୍ଖ' ତାଙ୍କ ପାଇଁ ଥିଲା ଏକ ନିଶା । ସେଇ ନିଶାରେ ସେ ନିଜ ଜୀବନର ସବୁ ଦୁଃଖକୁ ଭୁଲି ଯାଉଥିଲେ । 'ଶଙ୍ଖ' ପୁଣି ପ୍ରକାଶିତ ହେବ, ଏହା ସ୍ୱପ୍ନ । ଯଦି ସେଇ ସ୍ୱପ୍ନ ସାକାର ହୋଇପାରେ, ତେବେ ବୈକୁଣ୍ଠବାବୁଙ୍କ ପାଇଁ ତାହା ହେବ ଆମର ଶ୍ରଦ୍ଧାଞ୍ଜଳି ।



# ସାହିତ୍ୟ ସଭା

ବନ୍ଧୁଙ୍କର ପତ୍ରଟିଏ ପାଇଲି । ସେଥିରେ କ'ଣ ଲେଖାଥିଲା, ତାହା ଏଠାରେ ବର୍ଣ୍ଣନା କରାଯାଉନି । କିନ୍ତୁ ବନ୍ଧୁ ଲେଖିଥିଲେ କ୍ଷୋଭ ପ୍ରକାଶ କରି ଯେ ସାହିତ୍ୟରେ କିଛି ବଡ଼ ପଣ୍ଡାମାନଙ୍କୁ ପ୍ରୋତ୍ସାହନ ଦିଆଯାଉଛି । ପ୍ରଶଂସା କରାଯାଉଛି । ଏକଥା ଯଦିଓ ସତ, ଏହା କ'ଣ ଆଜି ନୂଆ । ଅନେକ ଦିନ ଧରି ଚାଲିଛି, ଚାଲିବ ଓ ଚାଲିଥିବ । ଆପଣ, ମୁଁ ହୁଏତ ପ୍ରଶଂସା ନ କରିବା, ସେ, ସେମାନେ ପ୍ରଶଂସା କରିବେ । ପ୍ରଶଂସା କରିବା କିଛି ଭୁଲ୍ ନୁହେଁ କିନ୍ତୁ ଅତି ପ୍ରଶଂସା ହିଁ ଖରାପ । ଠିକ୍ ଠିକ୍ ମୂଲ୍ୟାଙ୍କନ ହେବାକୁ, ଠିକ୍ ଭାବରେ ତଥ୍ୟ ଉପସ୍ଥାପିତ କରିବାକୁ ପ୍ରଶଂସା ଲୁହାଯିବନି । ଆମ୍ଭେମାନେ ଏପରି ଏକ ସମାଜ ବ୍ୟବସ୍ଥାରେ ବାସ କରୁଛେ ଯେ ଠିକ୍ ସତ୍ୟକଥାଟିଏ କହିବା ଏତେ ସହଜ ନୁହେଁ । କିନ୍ତୁ ସତ ନ କହିବା ବା ଜାଣି ଶୁଣି ମିଛ କହିବା ବା ଅତିରଞ୍ଜିତ କରି କହିବା ନିଶ୍ଚିତ ରୂପେ ଗ୍ରହଣୀୟ ନୁହେଁ ।

ଆଜିକାଲି ଆମ ସାହିତ୍ୟର ରଥୀ ଓ ମହାରଥୀମାନେ ସାହିତ୍ୟ ସଭାମାନଙ୍କରେ ଅତିଶୟୋକ୍ତି କରିବାର ଦୃଷ୍ଟାନ୍ତ ବଢ଼ିବାରେ ଲାଗିଛି । କାରଣ ସାହିତ୍ୟ ସଭା ଢେର ବେଶି । ପୁସ୍ତକ ଉନ୍ମୋଚନ ଅନେକ । ଯଦି ପୁସ୍ତକ କୌଣସି ଲେଖିକାଙ୍କର ହୋଇଥାଏ, ତେବେ ସେହି ପୁସ୍ତକ ଉନ୍ମୋଚନ ସଭାରେ ବହୁ ସାହିତ୍ୟିକମାନଙ୍କର ଭିଡ଼ ଓ ମୁଖ୍ୟ ଅତିଥି ପୁସ୍ତକ ଓ ତାର ଲେଖିକାଙ୍କର ପ୍ରଶଂସାରେ ଗଳଦ୍‌ଘର୍ମ ହୋଇ ଯାଉଛନ୍ତି । ଏହା ଲେଖିକା ବା ପୁସ୍ତକ ବା ସାହିତ୍ୟ ପାଇଁ ନିଶ୍ଚିତ ଭବିଷ୍ୟତ ଗଢେନା । କେବଳ ପତ୍ରିକା ଉନ୍ମୋଚନ କରିବା, ପୁସ୍ତକ ଉଦ୍‌ଘାଟନ କରିବା ଇତ୍ୟାଦି ବ୍ୟାତୀତ ସାହିତ୍ୟିକମାନେ କିଛି ତାତ୍ତ୍ୱିକ, ସାମାଜିକ, ଅର୍ଥନୈତିକ, ରାଜନୈତିକ ବିଚାର କରିବାକୁ ସଭାରେ ଆଗେଇ ଆସିବା ପ୍ରାୟତଃ ଦେଖାଯାଉନି । ଏ ବିଷୟରେ ସାହିତ୍ୟିକ ନେତୃତ୍ୱ ଓଡ଼ିଶାରେ ସଙ୍କଟ ଯେପରି ରାଜନୈତିକ ନେତୃତ୍ୱ । କ୍ଷୁଦ୍ର କ୍ଷୁଦ୍ର ବୃକ୍ଷମାନେ ନିଜକୁ ମହାଦ୍ରୁମ ବୋଲି ଆସ୍ଫାଳନ କରିବାର ଓ ବାହାଦୂରୀ ନେବାର ପ୍ରାୟତଃ ଆମ ରାଜ୍ୟରେ ହିଁ ଦେଖାଯାଉଛି ।

କାରଣ କୌଣସି ସମୟରେ ଚାକିରୀଜୀବୀ ସାହିତ୍ୟ ବା ସମାଜର ନେତୃତ୍ୱ ନେଇପାରେ ନାହିଁ । ଯଦି ସାହିତ୍ୟରେ ସମାଜର ରୂପ ପ୍ରତିଫଳିତ ନ ହେଲା, ତେବେ

ସେହି ସାହିତ୍ୟକୁ କେବଳ ଶୈଳୀ, ଭାଷା ବା ଭାବ ଦୃଷ୍ଟିରୁ ବିଚାର କରିବାର କୌଣସି ଯୁକ୍ତି ନାହିଁ । ଏଥିପାଇଁ ଆବଶ୍ୟକ ଗମ୍ଭୀର ତାତ୍ତ୍ୱିକ ଆଲୋଚନା । ପୁସ୍ତକ ଉନ୍ମୋଚନ ବେଳେ, ଶୀତତାପ ନିୟନ୍ତ୍ରିତ କକ୍ଷରେ, କେବଳ ପ୍ରଶଂସା କଲେ, ତାହା ସାହିତ୍ୟ ପ୍ରତି ବ୍ୟଙ୍ଗ ଓ ବିଦ୍ରୂପ । ପ୍ରଶଂସା ପାଇଁ ପ୍ରଶଂସା ବା ନିନ୍ଦା ପାଇଁ ନିନ୍ଦା ନ କରିଯାଇ ମୂଲ୍ୟାଙ୍କନ ହେଲେ ପାଠକ ସାହିତ୍ୟ ପ୍ରତି ଆକୃଷ୍ଟ ହେବେ ।

ସାହିତ୍ୟ ସଭା କେବଳ ପ୍ରଶଂସା ବା ନିନ୍ଦାର ହାଟ ନ ହେଉ । ଯେତେ ବଡ଼, ମହାନ୍ ବା ବରିଷ୍ଠ ସାହିତ୍ୟିକ ହୋଇଥାନ୍ତୁ ପଛକେ, ଏକ ନିର୍ଭୀକ, ଗଠନମୂଳକ ଆଲୋଚନା ନିଶ୍ଚିତ ଭାବେ ଗୁରୁତ୍ୱ ବହନ କରେ ଓ ସମାଜର ପରିବର୍ତ୍ତନରେ ସହାୟକ ହୋଇଥାଏ । ସାହିତ୍ୟ ସଭା ମାଧ୍ୟମରେ ରାଜନୈତିକ ପୃଷ୍ଠପୋଷକତା, ପୁରସ୍କାର ପାଇବାର ନିଶ୍ଚିତତା, ଅର୍ଥ ଉପାର୍ଜ୍ଜନ କରିବାର ଲାଳସା ଏବଂ ଏପରିକି ସରକାରୀ କ୍ଷେତ୍ରରେ ପ୍ରମୋସନ ପାଇବା ବା ବଦଳି ସ୍ଥଗିତ କରିବାର ଘୃଣ୍ୟ ବିଚାର ସାହିତ୍ୟିକମାନେ ବା ସାହିତ୍ୟ ସଭାର ଆୟୋଜକମାନେ ମନରୁ ଫିଙ୍ଗିଦେବା ଉଚିତ ।

ଏହା କ'ଣ ସମ୍ଭବ କି ? ସମ୍ଭବ ନିଶ୍ଚିତ କିନ୍ତୁ ସମୟ ସାପେକ୍ଷ । ବରିଷ୍ଠ ସାହିତ୍ୟିକମାନେ ଏ ବିଷୟରେ ଟିକିଏ ବିଶେଷ ଆଗଭର ହେଲେ, ତରୁଣମାନେ ନିଶ୍ଚିତ ଯୋଗଦାନ କରିବେ । ବୈଷ୍ଣବମାନଙ୍କର ସହଜିଆ ଭକ୍ତିଭାବ ପରି ସାହିତ୍ୟ ସଭା ସହଜିଆ ହୋଇ ନଯାଉ, ତାହା ଆମ ଭାଷା ସାହିତ୍ୟ ପ୍ରତି ଶୁଭଙ୍କର ନୁହେଁ ।



# ଜାତୀୟ ଯୁବ ଦିବସ

ସମଗ୍ର ଓଡ଼ିଶାରେ ଜାତୀୟ ଯୁବ ଦିବସ ତଥା ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମଦିବସ ବିଭିନ୍ନ ସ୍ଥାନରେ ପାଳିତ ହେବାର ଖବର, ଖବରକାଗଜରେ ପୃଷ୍ଠା ମଣ୍ଡନ କରୁଛି । କେତେକ ସ୍ଥାନରେ ଯୁବ ସଂଗଠନମାନେ ଏହାକୁ ପାଳନ କରିବାବେଳେ, ଜିଲ୍ଲା ସ୍ତରରେ ଯୁବ ଦିବସ ଜିଲ୍ଲାର କର୍ମକର୍ତ୍ତାମାନଙ୍କ ଦ୍ୱାରା ପାଳିତ ହୋଇଛି । ଏହା ନିଶ୍ଚିତଭାବେ ଏକ ଶୁଭ ସୂଚନା ।

ଯୁବ ସମ୍ପ୍ରଦାୟ ଯୁବ ଦିବସ ପାଳନ ଅବକାଶରେ ସ୍ୱାମୀ ବିବେକାନନ୍ଦଙ୍କ ଦେଶପ୍ରେମର ଆଦର୍ଶରେ ଉଦ୍‌ବୁଦ୍ଧ ହେବେ ବୋଲି ଆଶା କରାଯିବା ସ୍ୱାଭାବିକ । ଏହାକୁ କେବଳ ଉତ୍ସବରେ ସୀମାବଦ୍ଧ କରିଦେଲେ ଏ ଦିବସର ଉଦ୍ଦେଶ୍ୟ ସଫଳ ହେବ ନାହିଁ ।

ଦଶପଲ୍ଲାଠାରେ ବିବେକାନନ୍ଦ ପଠନ କେନ୍ଦ୍ର ଆନୁକୂଲ୍ୟରେ ଜାତୀୟ ଯୁବ ଦିବସ ପାଳନ କରାଯାଇଥିଲା । ସମସ୍ତେ ତରୁଣ । ଏହି ତରୁଣ ଉଦ୍ୟୋକ୍ତାମାନଙ୍କର ଉଦ୍ୟମ, ଚେଷ୍ଟା, ନିଷ୍ଠା ବାସ୍ତବିକ୍ ପ୍ରଶଂସନୀୟ ।

କେତେକ ମୁଷ୍ଟିମେୟ ଯୁବକ ସଂଘବଦ୍ଧ ହୋଇ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଯେଉଁ କେତେଗୁଡ଼ିଏ ଉତ୍ତମ କାର୍ଯ୍ୟ କରିବାରେ ଲାଗିପଡ଼ିଛନ୍ତି, ତାହା ପ୍ରତ୍ୟେକ ଯୁବକମାନଙ୍କ ପାଇଁ ଏକ ଶିକ୍ଷଣୀୟ କାର୍ଯ୍ୟ ।

ବିବେକାନନ୍ଦ ପଠନ କେନ୍ଦ୍ର, ଦଶପଲ୍ଲା ତରଫରୁ ପ୍ରକାଶ ପାଇଥିବା ପତ୍ରିକା 'କୁଞ୍ଜବନ ଧାରା' ଏକ ସଫଳ ପ୍ରଚେଷ୍ଟା । ୨ୟ ସଂଖ୍ୟାର ପ୍ରାରମ୍ଭରେ ସ୍ୱାମୀ ବିବେକାନନ୍ଦଙ୍କର ଗୋଟିଏ ମହନୀୟ ବାଣୀର ଉଲ୍ଲେଖ ଏହି ପତ୍ରିକାଟିର ଗୌରବଶ୍ରୀକୁ ବୃଦ୍ଧି କରିବା ସହିତ ଯୁବକମାନଙ୍କର ଚିନ୍ତା, ଚେତନା ଓ ଆଦର୍ଶର ମୂଲ୍ୟାଙ୍କନ କରିପାରୁଛି ।

ସ୍ୱାମୀଜୀଙ୍କର ସେହି ବାଣୀଟି ହେଉଛି, "ଯେଉଁମାନେ ମହତ୍ କର୍ମର ଅଧିକାରୀ, ସେମାନେ କିଛି ଦାବୀ କରନ୍ତି ନାହିଁ, କେବଳ ଅଳସ, ଅକର୍ମଣ୍ୟ ମୂର୍ଖମାନଙ୍କ ପକ୍ଷରେ ହିଁ ତାହା ସମ୍ଭବ ।"

ଏହି କ୍ଷୁଦ୍ର ବାଣୀଟିରେ ଦେଶ ସେବା ପାଇଁ ମହତ୍ତ୍ କର୍ମର ଯେଉଁ ସୂଚନା ଦିଆଯାଇଛି, ତାହାକୁ ବାସ୍ତବିକ୍ ରୂପ ଦେବାର ଚେଷ୍ଟା କରୁଛନ୍ତି ବିବେକାନନ୍ଦ ପଠନ କେନ୍ଦ୍ରର ସଦସ୍ୟମାନେ । ଦଶପଲ୍ଲା ପରି ଏକ ଅଞ୍ଚଳରେ ଏକ ଲାଇବ୍ରେରୀ ଗଠନ କରି, ତାହା ମାଧ୍ୟମରେ ସାକ୍ଷରତା ଅଭିଯାନ, କୃଷି ଓ ହସ୍ତଶିଳ୍ପର ବିକାଶ ପାଇଁ ସେମାନଙ୍କର ପ୍ରଚେଷ୍ଟା ଏବଂ ସମସ୍ତ ଲୋକମାନଙ୍କ ମଧ୍ୟରେ କାର୍ଯ୍ୟ କରିବାର ଯେଉଁ ଆଗ୍ରହ ସୃଷ୍ଟି କରିପାରିଛନ୍ତି, ତାହା ଗ୍ରାମ ସ୍ୱରାଜ୍ୟ ପାଇଁ ଯେ ଅପରିହାର୍ଯ୍ୟ, ଏକଥା ଯେ ଦେଖିବ ସେ ନିଶ୍ଚୟ ସ୍ୱୀକାର କରିବ ।

ଯୁବକମାନଙ୍କ ମଧ୍ୟରେ ରହିଛି ଅଦମ୍ୟ ଉତ୍ସାହ, ନିଜର ଭାଷା ସାହିତ୍ୟର ବିକାଶ ପାଇଁ ଅପରିସୀମ ଆଗ୍ରହ ଏବଂ କାର୍ଯ୍ୟ କରିବାର ଏକାନ୍ତ ନିଷ୍ଠା ।

ଭାରତ ଗାଁରେ ବାସ କରେ । ଗାଁର ଉନ୍ନତି ଆବଶ୍ୟକ ବୋଲି ଶସ୍ତା ରାଜନୈତିକ ଧ୍ୱନି ଚାଲିଥିବାବେଳେ ଯୁବକମାନେ ଅଣ୍ଟାଭିଡ଼ି ସଂସ୍କୃତି ମାଧ୍ୟମରେ, ଧର୍ମ ମାଧ୍ୟମରେ ଭାଷା ମାଧ୍ୟମରେ ଯେଉଁ ଏକତ୍ୱର ମହାନୀୟ ମନ୍ତ୍ର ବାଣ୍ଟି ଚାଲିଛନ୍ତି, ତାହା ସ୍ୱାମୀ ବିବେକାନନ୍ଦଙ୍କ ପ୍ରତି ସେମାନଙ୍କର ପ୍ରେମ ଓ ଶ୍ରଦ୍ଧାରୁ ଜାତ ।

ହେଉ ପଛେ ଗ୍ରେଷ୍ଟ ଅଞ୍ଚଳଟିଏ, ବଣଜଙ୍ଗଲଘେରା, ପ୍ରାକୃତିକ ସମ୍ପଦରେ ଭରପୂର ମାତ୍ର ସେଠାକାର ଲୋକମାନଙ୍କର ମାନବିକ ମୂଲ୍ୟବୋଧ ପ୍ରତି ସଚେତନ ଏବଂ ପରସ୍ପରକୁ ଭଲ ପାଇ ନିଜକୁ ଗଢ଼ିବାର ଚେଷ୍ଟା, ଏ ଜାତିକୁ ନିଶ୍ଚୟ ଉଚ୍ଚକୁ ନେବ ।

ସ୍ୱାମୀଜୀ ଚାହିଁଥିଲେ କେତେକ ଯୁବକ, ଯେଉଁ ଯୁବକମାନେ ଦେଶ ପାଇଁ ଓ ଜାତି ପାଇଁ ନିଜକୁ ତ୍ୟାଗ କରିପାରିବେ । 'ସେବା ଓ ତ୍ୟାଗ' ମନ୍ତ୍ରରେ ଅଭିମନ୍ତ୍ରିତ ବିବେକାନନ୍ଦ ପଠନ କେନ୍ଦ୍ରର ଏହି ଯୁବ-ବାହିନୀ ଆମ ଭାଷା, ସାହିତ୍ୟ, ସଂସ୍କୃତି ଓ ପ୍ରଗତି ପାଇଁ ଏକ ଆଶ୍ୱାସନା ।



# ନୂଆ ଦୁନିଆ

ନୂଆ ଦୁନିଆ କହିବାମାତ୍ରେ ଆମେ ବୁଝୁ ଯେ ଏକ ନୂଆ ସମାଜ ବ୍ୟବସ୍ଥା ଗଠନ କରିବା । ଆଲୋଚ୍ୟ ବିଷୟର ମୁଖ୍ୟ ସ୍ୱର ତାହା ହେଲେ ହେଁ, ଏକ ପତ୍ରିକାର ନାମ ହେଉଛି ନୂଆ ଦୁନିଆ । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ସାପ୍ତାହିକ କାଗଜ 'ନୂଆ ଦୁନିଆ'ର ଏ ବର୍ଷର ଭଗବତୀ ବିଶେଷାଙ୍କ ସମ୍ପର୍କରେ ସମ୍ୟକ୍ ଧାରଣା ଦେବା ଏ ଲେଖାର ଉଦ୍ଦେଶ୍ୟ ।

କାରଣ ଏ ପତ୍ରିକାଟି ଏକ ଭିନ୍ନ ସ୍ୱାଦର ପତ୍ରିକା । ଗତାନୁଗତିକ ଧାରାରେ ପ୍ରକାଶିତ ହେଉଥିବା ପତ୍ରିକା ନୁହେଁ । ପ୍ରତ୍ୟେକ ବର୍ଷ ଭଗବତୀଙ୍କ ନାମରେ ଏକ ବିଶେଷାଙ୍କ ତାଙ୍କର ତିରୋଧାନ ଅବସରରେ ପ୍ରକାଶିତ ହୁଏ । ଭଗବତୀ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦୀ ଚିନ୍ତାଧାରାର ଆଦ୍ୟ ପ୍ରବର୍ତ୍ତକ ଏବଂ ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ଭଗୀରଥ । ତାଙ୍କର ଜନ୍ମ ୧୯୦୮ ମସିହା ଫେବୃଆରୀ ୧ ତାରିଖ ଓ ତିରୋଧାନ ୧୯୪୩ ଅକ୍ଟୋବର ୨୩ ତାରିଖ । ଏହି ସ୍ୱଳ୍ପ ୩୫ ବର୍ଷ ଜୀବନ ଭିତରେ ଭଗବତୀ ଚରଣ ଯେପରି ଭାବରେ ସମଗ୍ର ଜନମାନସଙ୍କ ଉପରେ ଛାଇ ହୋଇ ରହିଛନ୍ତି, ବୋଧହୁଏ ଗୋପବନ୍ଧୁଙ୍କ ପରେ ସେ ହେଉଛନ୍ତି ଅନ୍ୟତମ ବ୍ୟକ୍ତି ।

ଗୋପବନ୍ଧୁଙ୍କ ପରି ସେ ବ୍ୟକ୍ତିରୁ ଅନୁଷ୍ଠାନ ଏବଂ ଅନୁଷ୍ଠାନରୁ ଆନ୍ଦୋଳନରେ ପରିଣତ ହୋଇଛନ୍ତି । ମାର୍କସ୍‌ବାଦ ତତ୍ତ୍ୱରୁ ଜନ୍ମ ନେଇଥିବା କମ୍ୟୁନିଜମ୍‌ର ଆଦର୍ଶରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ନିଃଶେଷ କରିଥିବା ଭଗବତୀଙ୍କର ଆବଶ୍ୟକତା ବର୍ତ୍ତମାନ ସାମାଜିକ ବ୍ୟବସ୍ଥାରେ ଅପରିହାର୍ଯ୍ୟ । ଏକଥା ହୁଏତ କେହି କେହି ଗ୍ରହଣ ନ କରିପାରନ୍ତି । କାରଣ ଯେପରି ଭାବରେ ବିଶ୍ୱୀକରଣ, ଉଦାରୀକରଣ ଓ ଘରୋଇକରଣର ଢୁଆ ଉଠିଛି, ଯେଉଁ ନୂଆ ରୂପରେ ପୁଞ୍ଜିବାଦ ତା'ର ଭେଲିକି ଦେଖାଇ, ଲୋକମାନଙ୍କର ମନକୁ ଆକୃଷ୍ଟ କରିବାର ଚେଷ୍ଟା ଅବ୍ୟାହତ ରଖିଛି, ଯେମିତି ନବ୍ୟ ଫାସୀବାଦ ଓ ନବ୍ୟ ଉପନିବେଶବାଦ ଆଡ଼କୁ ମଣିଷ ମୁହାଁଇବାକୁ ଚେଷ୍ଟା କରାଯାଉଛି, ତାକୁ ମୁକାବିଲା କରିବାର ଏକମାତ୍ର ଔଷଧ ହେଉଛି ଭଗବତୀଙ୍କର ପ୍ରଦର୍ଶିତ ମାର୍ଗ ।

ଏ ମାର୍ଗଟି ସହଜ ମାର୍ଗ ନୁହେଁ । ଏହାକୁ ବିଶ୍ୱାସ କରିବା, ଗ୍ରହଣ କରିବା ଓ ନିଜ ଜୀବନରେ ପ୍ରତିଫଳିତ କରି ତାକୁ କାର୍ଯ୍ୟରେ ରୂପାୟିତ କରିବାର ଦାୟିତ୍ୱ ଲେଖକ, କବି, ସାହିତ୍ୟିକମାନଙ୍କ ଉପରେ । କିନ୍ତୁ ବର୍ତ୍ତମାନ ଲେଖକମାନେ ଯେତେ ବେଶୀ ସାମାଜିକ ବିଧିବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିବା କଥା ତାହା ନ କରି, ସମାଜର ନୂଆ ରୂପରେ ବିମୁଗ୍ଧ ବିମୋହିତ ହୋଇ ଲେଖନୀ ଚାଳନା କରୁଛନ୍ତି । ମାନବିକ ଅଧିକାରର ସ୍ୱର ଯେତେ ଯେତେ ପ୍ରକାଶିତ ହେବ, ସମାଜରେ ସେତେ ଚେତନା ଜାଗ୍ରତ ହେବ । ଏହି ଜାଗ୍ରତ ପ୍ରହରୀର କାର୍ଯ୍ୟ କରିବାର ଦାୟିତ୍ୱ ଲେଖକମାନଙ୍କର ଏକଥା ଭଗବତୀ ସୂଚାଇ ଦେଇଯାଇଛନ୍ତି ।

ନୂଆ ଦୁନିଆ ସେହି ପରମ୍ପରାର ଦାୟାଦ ଭାବେ ନିଜକୁ ଏ ପର୍ଯ୍ୟନ୍ତ ପରିଚିତ କରାଇବାରେ ସକ୍ଷମ ହୋଇଛି । କିନ୍ତୁ ଏହାର ପ୍ରସାର ଓ ପ୍ରଚାର ଲୋଡ଼ା । ପ୍ରକାଶିତ ପୁସ୍ତକରେ 'କବି ବନ୍ଦନା' କ୍ରମରେ ଡକ୍ଟର ପ୍ରସନ୍ନ କୁମାର ମିଶ୍ର ଲେଖିଛନ୍ତି, "ନିଜେ ଉପାସ ରହି, ଭୋକିଲା ନାରୀ ନରଙ୍କ ମୁହଁରେ, ଅନ୍ନ ଦେଇଥିବା ପୁରୁଷର ଗାଥା, କି'ଏ ଯଦି ଲେଖିବ, ଆସ, ଶଙ୍ଖ ଅର୍ଘ୍ୟରେ, ତୁମର ଅର୍ଚ୍ଚନା କରିବି ମୁଁ ।" କେଉଁମାନେ ଲେଖୁଛନ୍ତି ନିରିହ ମଣିଷଟିର କଥା ? କେଉଁ କବି ଗାଉଛି କୃଷକର ଜୀବନରେ ଦେଖାଦେଇଥିବା ଝଡ଼ ? ଏଠି ସାହିତ୍ୟ ନାଁରେ ଯେଉଁ ଯେଉଁ ଲେଖାମାନ ଛତୁ ଫୁଟିବା ପରି ଫୁଟିବାରେ ଲାଗିଛନ୍ତି, ପଦପଦବୀ ପୁରସ୍କାରର ବିମଣ୍ଡନରେ ଯେଉଁମାନେ ବିମଣ୍ଡିତ ହୋଇ ପତ୍ରୀ ମଣ୍ଡନ କରି, ଖବରକାଗଜର ପୃଷ୍ଠାକୁ କଦର୍ଥ କରି ନିଜର ଆସ୍ଫାଳନରେ ଆସ୍ଫାଳିତ ହେଉଛନ୍ତି, ସେମାନେ କ'ଣ ଭଗବତୀଙ୍କର ଭାବକୁ ସାକାର କରିପାରିବେ ? ଏ ବିଶ୍ୱାସ ଓ ପ୍ରତ୍ୟୟ ମନରେ ଆଦୌ ଜନ୍ମୁ ନାହିଁ ।

ନୂଆ ଦୁନିଆର ଭଗବତୀ ବିଶେଷାଙ୍କରେ ଯେଉଁ କେତେଗୁଡ଼ିଏ ବିଷୟ ସନ୍ନିବେଶିତ ହୋଇଛି, ସେଥିରେ ସ୍ୱାଧୀନତା ସଂଗ୍ରାମୀ ଗୁରୁଚରଣ ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ମହାନ୍ତି, ନନ୍ଦକିଶୋର ପଟ୍ଟନାୟକ ଇତ୍ୟାଦିଙ୍କର ଲେଖା ବେଶି ଗୁରୁତ୍ୱ ବହନ କରେ ।

# ପଲ୍ଲୀପ୍ରାଣ ନନ୍ଦକିଶୋର

ପଲ୍ଲୀକବି ନନ୍ଦକିଶୋରଙ୍କ ଜୟନ୍ତୀ ପାଳନ ପାଇଁ ଆୟୋଜକମାନଙ୍କ ନିକଟରୁ ନିମନ୍ତ୍ରଣପତ୍ରଟିଏ ପାଇଲି । ସଭାଟିଏ ହେବ, ନନ୍ଦକିଶୋରଙ୍କ ବହୁମୁଖୀ ପ୍ରତିଭା ସମ୍ପର୍କରେ ଆଲୋଚନା ହେବ ଏବଂ ପଲ୍ଲୀକବି ନନ୍ଦକିଶୋର ସମ୍ମାନ—୧୯୯୫ ପ୍ରଦାନ କରାଯିବ ।

ଏହି ଜୟନ୍ତୀ ଉତ୍ସବର ଆୟୋଜନ କରିଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ । ଭଞ୍ଜ କଳାମଣ୍ଡପରେ ଠିକ୍ ନିର୍ଦ୍ଦିଷ୍ଟ ସମୟ ସନ୍ଧ୍ୟା ସାଢ଼େ ପାଞ୍ଚଟାରେ ପହଞ୍ଚିଲି । ଦୁଇ ଚାରିଜଣ ; ଆଉ କେହି ନାହାନ୍ତି । ଏକାଡେମୀର କେହି କେହି ଏକଡ଼ ସେକଡ଼ ହୋଇ ବୁଲୁଥାନ୍ତି । ଆମର ସମୟଜ୍ଞାନ ସମ୍ପର୍କରେ ଆମେ ସଦାବେଳେ ସଚେତନ ଥିବାରୁ ସଭାକାର୍ଯ୍ୟ ନିର୍ଦ୍ଦିଷ୍ଟ ସମୟରୁ କିଛି ବିଳମ୍ବରେ ଆରମ୍ଭ ହେଲା ।

ଏ ବର୍ଷର ପଲ୍ଲୀକବି ନନ୍ଦକିଶୋର ପୁରସ୍କାର ପ୍ରଫେସର ପଠାଣି ପଟ୍ଟନାୟକଙ୍କୁ ଏକାଡେମୀର ଉପସଭାପତି ଶ୍ରୀ ଶ୍ରୀନିବାସ ଉଦ୍‌ଗାତା ପ୍ରଦାନ କଲେ । ପ୍ରଫେସର୍ ପଟ୍ଟନାୟକ ନନ୍ଦକିଶୋରଙ୍କ ସମ୍ପର୍କରେ ତଥ୍ୟଭିତ୍ତିକ ବକ୍ତୃତା ଦେଲେ । ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ପଲ୍ଲୀକବି ନନ୍ଦକିଶୋର ତୃତୀୟ ସ୍ମାରକ ବକ୍ତୃତା ଦେବା ଅବକାଶରେ ତାଙ୍କୁ ଇତିହାସ ଦୃଷ୍ଟିକୋଣରୁ ଦେଖିବାର ପ୍ରଯତ୍ନ କରିଛନ୍ତି ବୋଲି କହିଲେ ।

ଉଭୟ ଶ୍ରୀଯୁକ୍ତ ପଟ୍ଟନାୟକ ଓ ଶ୍ରୀଯୁକ୍ତ ଦାଶଙ୍କର ବକ୍ତବ୍ୟ ଶ୍ରେଣୀ କକ୍ଷରେ ଛାତ୍ରମାନଙ୍କୁ ପଢ଼ାଇବା ପରି ଲାଗୁଥିଲା । ଦର୍ଶକ ସଂଖ୍ୟା ସୀମିତ ହୋଇଥିଲେ ମଧ୍ୟ ଏଥିରେ ଶ୍ରୀ ଚିତ୍ତରଞ୍ଜନ ଦାସ, ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ ପ୍ରମୁଖ କେତେକ ବରିଷ୍ଠ ସାହିତ୍ୟିକ ଉପସ୍ଥିତ ଥିଲେ ।

ମନରେ ପ୍ରଶ୍ନ ଆସେ, ସ୍ମାରକୀ ବକ୍ତୃତା କରାଯିବାର ଉଦ୍ଦେଶ୍ୟ କ'ଣ ? ଆମେ ଯେତେବେଳେ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କୁ ମନେପକାଉ, ସେତେବେଳେ ତାଙ୍କର କୃତି ଓ ଜୀବନୀ କିପରି ଆମକୁ ସାଂପ୍ରତିକ ସମୟରେ ପ୍ରଭାବିତ କରୁଛି, ତାହା ବିଚାର କରିଥାଉ । କିପରି ତାଙ୍କର କୃତି କାଳଜୟୀ ହୋଇ ମଣିଷ ସମାଜକୁ ନୂତନ

ଆଲୋକ ପ୍ରଦାନ କରେ, ତାହା ଦେଖୁ । ସ୍ମାରକୀ ବକ୍ତୃତାର ଉଦ୍ଦେଶ୍ୟ ହେଉଛି ବର୍ତ୍ତମାନକୁ ଅତୀତ ସହିତ ଯୋଡ଼ିବା, ଅତୀତରୁ ଶିକ୍ଷାଲାଭ କରି ବର୍ତ୍ତମାନରେ ତାକୁ ପ୍ରୟୋଗ କରି ନୂତନତା ସୃଷ୍ଟି କରିବା ।

ପଲ୍ଲୀକବି ନନ୍ଦକିଶୋରଙ୍କ ପଲ୍ଲୀଜୀବନ ପ୍ରତି ପ୍ରେମର ଯେଉଁ ଝଲକ ଚିତ୍ର ତାଙ୍କ ସାହିତ୍ୟରେ ଫୁଟିଉଠିଛି, ତାହା ସମସାମୟିକ ଜୀବନରେ କିପରି ନଷ୍ଟ ହୋଇଯାଉଛି, ତା'ର ଚିତ୍ର ପ୍ରଦାନ କରିବା । କୌଣସି ଲେଖକର ବୈଶିଷ୍ଟ୍ୟ ପ୍ରଦାନ କରିବାର ଅର୍ଥ ହେଉଛି ବର୍ତ୍ତମାନ ପ୍ରତି ସେ କେତେ ପ୍ରଯୁଜ୍ୟ ।

ବୋଧହୁଏ ଆଲୋଚକମାନେ ଏହି ଭାବନାଟିକୁ ଭୁଲିଯାଇଥିଲେ । ଫଳରେ ଆଲୋଚନା ରସଗ୍ରାହୀ ଓ ହୃଦୟ ଉଦ୍ଦୀପକ ହୋଇପାରି ନ ଥିଲା । ଫାଉଣ୍ଡେସନ୍ ତରଫରୁ ଦିଆଯାଉଥିବା ବକ୍ତୃତାକୁ ପୁସ୍ତକ ଆକାରରେ ପ୍ରକାଶ କରି ବାଣ୍ଟିବାର ଆବଶ୍ୟକତା ଉପରେ ଗୁରୁତ୍ୱ ଦିଆଯିବା ଉଚିତ । ଫଳରେ ଭବିଷ୍ୟତ ପାଇଁ ତାହା ଇତିହାସର ଭୂମିକା ସମ୍ପାଦନ କରିବ ।

ଏକାଡେମୀ ଓ ନନ୍ଦକିଶୋର ଫାଉଣ୍ଡେସନ୍‌ର ଏହି ସ୍ୱାଗତଯୋଗ୍ୟ ପଦକ୍ଷେପକୁ ବ୍ୟାପକ କରିବାକୁ ହେଲେ ଗତାନୁଗତିକ ଧାରାରେ ଏହାକୁ ସଂଗଠିତ ନ କରି ଏଥିରେ କିଛି ନୂତନତା ଭର୍ତ୍ତି କରିବାକୁ ହେବ ଏବଂ ଏ ସମ୍ପର୍କରେ ଆଲୋଚନା ଓ ପର୍ଯ୍ୟାଲୋଚନା ହେବା ଉଚିତ । ତେବେଯାଇ ଉଦ୍ଦେଶ୍ୟ ସଫଳ ହେବ ଓ ପୂର୍ବସୂରୀଙ୍କ ପ୍ରତି ଆମର ସମ୍ମାନବୋଧ ଦ୍ୱିଗୁଣିତ ହେବ ।



# ଇଣ୍ଡିଆନ୍ ଲିଟେରେଚର୍-
## ୧୭୨ ସଂଖ୍ୟା

ଇଣ୍ଡିଆନ୍ ଲିଟେରେଚର ବା ଭାରତୀୟ ସାହିତ୍ୟ ପତ୍ରିକାଟି ସଂପର୍କରେ ହୁଏତ ବହୁ କମ୍ ଲୋକ ଜାଣିଥିବେ । ଏହାର ପାଠକ ସଂଖ୍ୟା ସୀମିତ । କେନ୍ଦ୍ର ସାହିତ୍ୟ ଏକାଡେମୀର ମୁଖପତ୍ର ଭାବେ ପ୍ରତ୍ୟେକ ଦୁଇମାସରେ ଥରେ ଏହା ପ୍ରକାଶିତ ହୁଏ । ବେଶ ସୁରୁଚି ସଂପନ୍ନ ଏହି ପତ୍ରିକା । ଭାରତୀୟ ବିଭିନ୍ନ ଭାଷା ମାନଙ୍କରେ ରଚିତ ହେଉଥିବା ସାହିତ୍ୟର ଝଲକ ଏଥିରେ ଦେଖିବାକୁ ମିଳେ ।

ଏହାକୁ ତେଣୁ ପ୍ରତିନିଧି ସ୍ଥାନୀୟ ଏକ ପତ୍ରିକା ବୋଲି ଗ୍ରହଣ କରିବାକୁ ହୋଇଥାଏ । ପ୍ରତ୍ୟେକ ରାଜ୍ୟର ସାହିତ୍ୟ ପରିବେଷଣ କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବା ହେତୁ, ସେହି ସେହି ରାଜ୍ୟମାନଙ୍କର ଗଳ୍ପ, କବିତା, ପ୍ରବନ୍ଧର ପ୍ରତିନିଧି ସ୍ଥାନୀୟ ଗଳ୍ପ ଇତ୍ୟାଦି ସ୍ଥାନ ପାଇବା ଉଚିତ ।

ଦ୍ୱିତୀୟତଃ ଏହି ପତ୍ରିକା ସଂପର୍କରେ ରାଜ୍ୟମାନଙ୍କରେ ଚର୍ଚ୍ଚା ହେବା ଦରକାର । ଯେକୌଣସି ପତ୍ର ପତ୍ରିକାର ବହୁଳ ବା ସ୍ୱଳ୍ପ ଚର୍ଚ୍ଚା ନ ହେଲେ, ସେଇ ପତ୍ରିକା ସମ୍ବନ୍ଧରେ ଧାରଣା ସ୍ପଷ୍ଟ ହୁଏ ନାହିଁ । ବିଶେଷକରି ଏକାଡେମୀ ଦ୍ୱାରା ପ୍ରକାଶିତ ପତ୍ରପତ୍ରିକାର ମୂଲ୍ୟାଙ୍କନ ହେବା ଉଚିତ ।

ଭାରତୀୟ ସାହିତ୍ୟର ଏହି ସଂଖ୍ୟାଟି ମାର୍ଚ୍ଚ-ଏପ୍ରିଲ ସଂଖ୍ୟା ଭାବେ ଓଡ଼ିଆ ଗଳ୍ପ ସଂପର୍କରେ ବିଶେଷ ଉପସ୍ଥାପନା କରାଯାଇଛି । ଓଡ଼ିଆ ଗଳ୍ପ ସଂପର୍କରେ ଯେହେତୁ ଏଥିରେ ଗୁରୁତ୍ୱ ଦିଆଯାଇଛି, ସେହିହେତୁ ଏଥିରେ କେତେକ ପ୍ରତିନିଧି ସ୍ଥାନୀୟ ଗଳ୍ପ, ସମୟାନୁକ୍ରମିକ ଭାବେ ଉପସ୍ଥାପିତ ହୋଇଥିବ ବୋଲି ଯେ କେହି ପାଠକ ନିଶ୍ଚେ ଚିନ୍ତା କରିବେ । କିନ୍ତୁ ଏହାକୁ ପଢ଼ିବାକୁ ଯାଇ ଦେଖିଲେ, କେବଳ ଦୁଃଖ ନୁହେଁ ବରଂ ମନରେ କ୍ଷୋଭ ଜାତ ହୁଏ ।

ଗଳ୍ପ ପ୍ରକାଶ କ୍ରମରେ ଫକୀରମୋହନ ସେନାପତି, ଗୋପୀନାଥ ମହାନ୍ତି, ରବି ପଟ୍ଟନାୟକ, ରାମଚନ୍ଦ୍ର ବେହେରା, ସୁରେନ୍ଦ୍ର ମହାନ୍ତି, ମନୋଜ କୁମାର ପଣ୍ଡା ଶକୁନ୍ତଳା ପଣ୍ଡା, ପ୍ରତିଭା ରାୟଙ୍କର ନାମ ଦେଖିବାକୁ ମିଳେ ।

ଯଦି ଭାରତୀୟ ସାହିତ୍ୟ ପତ୍ରିକାରେ ଓଡ଼ିଆ ଗଳ୍ପର ସ୍ୱରକୁ ଶୁଣାଇବା ଆବଶ୍ୟକ ଥିଲା, ତେବେ ଓଡ଼ିଆ ଗଳ୍ପ ଉପରେ ଯେଉଁ ଗୁରୁତ୍ୱ ଦିଆଯିବା କଥା, ତାହା ଦିଆଯାଇଛି ବୋଲି କହି ହେବକି ? ଭାରତୀୟ ସାହିତ୍ୟରେ ମନଇଚ୍ଛା ପ୍ରତିନିଧି ଓଡ଼ିଆ ଗଳ୍ପ ବୋଲି ଯେକୌଣସି ଗଳ୍ପକୁ ପ୍ରକାଶ, ଓଡ଼ିଆ ଗଳ୍ପ ପ୍ରତି ଉପହାସ ।

ଏହି ପତ୍ରିକାର ସଂପାଦକୀୟ ମଣ୍ଡଳୀରେ ଶ୍ରୀଯୁକ୍ତ ୟୁ.ଆର. ଅନନ୍ତ ମୂର୍ତ୍ତି, ଶ୍ରୀ ରମାକାନ୍ତ ରଥ, ଶ୍ରୀ ଇନ୍ଦ୍ରନାଥ ଚୌଧୁରୀ ଓ ସଂପାଦକ ଶ୍ରୀ କେ. ସଚ୍ଚିଦାନନ୍ଦନ ରହିଥିବା ବେଳେ ପ୍ରତିନିଧି ସ୍ଥାନୀୟ ଗଳ୍ପ ନିର୍ବାଚନ କରି ଯେପରି ଏହି ସଂଖ୍ୟାରେ ପ୍ରକାଶ କରାଗଲା, ତାହା ମନରେ ବିସ୍ମୟ ସୃଷ୍ଟି କରେ ଓ କ୍ଷୋଭ ଜାତ ହୁଏ ।

ମନରେ ଏଇଥିପାଇଁ କ୍ଷୋଭ ହୁଏ ଯେ ଗୋଟିଏ ଜାତିର ଭାଷା ସାହିତ୍ୟକୁ ଋଦ୍ଧିମନ୍ତ କରିବାକୁ ଯାଇ ଫକୀରମୋହନଙ୍କର ସଶକ୍ତ ଲେଖନୀ ଯେପରି ବିଦ୍ରୋହ କରି ଉଠୁଥିଲା, ଆଜି ନିଜକୁ ତାଙ୍କର ଦାୟାଦ ବୋଲି ଗର୍ବ କରୁଥିବା ସାହିତ୍ୟକ-ମାନେ ଭାରତୀୟ ସାହିତ୍ୟ ଦରବାରରେ ସେମାନଙ୍କୁ କିପରି ଉପସ୍ଥାପିତ କରୁଛନ୍ତି, ତାହା ଏହି ସଂଖ୍ୟାରୁ ବେଶ୍ ବୁଝାପଡ଼େ ।

ନିର୍ଭୀକ ଓ ସତ୍ୟ ମତଟିଏ ବ୍ୟକ୍ତ କରିବା ମାନେ ଏହାକୁ କୁତ୍ସାରଟନା ବୋଲି ପୁଟ ଦିଆଯାଏ । କିନ୍ତୁ ସତ ଯେତେ ଘୋଡ଼ାଇଲେ ମଧ୍ୟ ସତ । ଓଡ଼ିଆ ସାହିତ୍ୟକମାନେ ଏ ବିଷୟରେ ନିଜର ବିଚାର ଓ ମତ ସ୍ପଷ୍ଟ ଭାବେ ଦେଲେ, ତାହା ଓଡ଼ିଆ ସାହିତ୍ୟର ଆବର୍ଜନାକୁ ଦୂର କରିବାରେ ସହାୟକ ହେବ ବୋଲି ଆଶା ।



# ଜଣେ କମ୍ୟୁନିଷ୍ଟର ଆତ୍ମଜୀବନୀ

ଓଡ଼ିଆ ସାହିତ୍ୟରେ ଆତ୍ମଜୀବନୀ ବହୁଳ ନୁହେଁ । ଯେଉଁ କେତେଜଣ ନିଜର ଜୀବନୀ ଲେଖିଛନ୍ତି, ସେଥିରେ ସଂପୂର୍ଣ୍ଣ ସତ୍ୟ ସଦାସର୍ବଦା ପ୍ରକାଶିତ ହୋଇଥିବାର ପରିଲକ୍ଷିତ ହୁଏ ନାହିଁ । କାରଣ ନିଜକୁ ଉଚ୍ଚକରି ଦେଖାଇବାର ଅଭିପ୍ସା ହେତୁ ସତ୍ୟ ଆପଣା ଛପିଏ ଲୁଚିଯାଏ । ଆତ୍ମଜୀବନୀ ଇତିହାସ ସୃଷ୍ଟି କରିବାରେ ସାହାଯ୍ୟ କରେ । ଗୋଟିଏ ଜାତି, ସମାଜ ବା ରାଷ୍ଟ୍ରର ଇତିହାସ କେତେକ ବ୍ୟକ୍ତିବିଶେଷଙ୍କର ଜୀବନ ଇତିହାସ ବୋଲି ବିଗ୍ଭର କଲେ ଭୁଲ ହେବନାହିଁ । ଗାନ୍ଧୀ, ଜବାହର, ପଟେଲ ଇତ୍ୟାଦିଙ୍କ ଆତ୍ମଜୀବନୀ ଭାରତ ଇତିହାସର ଅଂଶବିଶେଷ । ଯେଉଁ ଦେଶରେ ଆତ୍ମଜୀବନୀ ଯେତେ ଅଧିକ ଦେଖିବାକୁ ମିଳେ, ସେ ଦେଶର ଇତିହାସ ଓ ସାହିତ୍ୟ ସେତେ ବେଶୀ ଉନ୍ନତ ।

ଏପରି କେତେକ ବ୍ୟକ୍ତିବିଶେଷ ଅଛନ୍ତି ଯେଉଁମାନେ ସମାଜରେ ଖୁବ୍ ଉଚ୍ଚସ୍ଥାନ ଅଧିକାର କରି ନଥିଲେ ହେଁ, ସେମାନଙ୍କର ସେବା ଓ ତ୍ୟାଗର ଜ୍ୱଳନ୍ତ-କାହାଣୀ ପାଠ କଲେ, ମନରେ ଭକ୍ତି ଓ ଶ୍ରଦ୍ଧା ଜାତ ହୁଏ । ସେମାନେ ନିଜେ ଜଳି, ନିଜର ଆଲୋକକୁ ବିତରଣ କରିଛନ୍ତି । ସେମାନଙ୍କର ଆତ୍ମଜୀବନୀ ବହୁ-ପାଠକଙ୍କର ଦୃଷ୍ଟି ଆକର୍ଷଣ କରି ପାରେନା । କାରଣ ସେମାନେ କେବେ ପ୍ରକାଶକମାନଙ୍କର ଦ୍ୱାର ମାଡ଼ିନାହାନ୍ତି । ସେମାନେ ଦେଶସେବାକୁ ନିଜ ଜୀବନର ଏକମାତ୍ର ବ୍ରତ ବୋଲି ଗ୍ରହଣ କରି ପଙ୍କିଳ ରାଜନୀତି ଭିତରେ ଗୋଡ଼ ମଧ୍ୟ ପୂରାଇ ନାହାନ୍ତି । ସେମାନଙ୍କ ନିକଟରେ ଆଦର୍ଶବୋଧ ସବୁଠାରୁ ଶ୍ରେଷ୍ଠସ୍ଥାନ ମଣ୍ଡନ କରିଛି ।

ଏପରି ଅନେକ ଜୀବନ ଅଛି ଯେଉଁମାନେ ସେମାନଙ୍କ ଜୀବନୀ ଲେଖି ପାରିନାହାନ୍ତି, ଛପିବା ଦୂରେ ଥାଉ । ଯଦି କେବେ ସେମାନେ ସେମାନଙ୍କର ଜୀବନୀ ଲେଖନ୍ତି, ତେବେ ଛପିବା ପାଇଁ କଷ୍ଟ କରିବାକୁ ପଡ଼ିଥାଏ । ସୁନ୍ଦର ପରିପାଟୀରେ ଛପାଯାଇ ପାରେନା ଓ ବହୁଳ ପ୍ରଚାର ଓ ପ୍ରସାର ହେବାର ସୁଯୋଗରୁ ବଞ୍ଚିତ ହୁଏ ।

ଏପରି ଏକ ଆତ୍ମଜୀବନୀ ସଂପର୍କରେ ମୁଁ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ତାହା ଓଡ଼ିଆ ଭାଷା, ସାହିତ୍ୟ ଓ ଇତିହାସ ପାଇଁ ଯେ ଅପରିହାର୍ଯ୍ୟ ସ୍ଥାନ ଦାବୀକରେ ଓ ପାଠକୀୟ ଶ୍ରଦ୍ଧାର ଆବଶ୍ୟକତା ରଖେ, ଏହା ଅନସ୍ୱୀକାର୍ଯ୍ୟ ।

ସେହି ପୁସ୍ତକଟିର ନାମ "ରକ୍ତସିକ୍ତ ଖୋର୍ଦ୍ଧା ମାଟିରେ ସଂଗ୍ରାମ" **ଓ ଏହାର** ଲେଖକ ଗୋକୁଳ ମୋହନ ରାଏ ଚୂଡ଼ାମଣି ।

ବର୍ତ୍ତମାନ ବୟସ ୮୫ ବର୍ଷ । ଗୋକୁଳବାବୁ ସ୍ୱାଧୀନତା ସଂଗ୍ରାମୀ । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ ଓ କଂଗ୍ରେସର ପ୍ରାଦେଶିକ କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ । କିନ୍ତୁ ୧୯୩୭ ମସିହାରେ ତାଙ୍କ ଜୀବନର ଗତିପଥ ବଦଳିଗଲା । ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଇ ସେ ନୂଆ ଯୁଗର ଦୀକ୍ଷାନେଲେ ବୋଲି ଲେଖିଛନ୍ତି । କଂଗ୍ରେସରୁ କମ୍ୟୁନିଷ୍ଟ । କାହିଁକି ? ସେ ଏ ସଂପର୍କରେ ମତଦେଇ ଲେଖିଛନ୍ତି— "ଦିନେ ଆମ ହୋଟେଲରେ ବସିଥିଲି । ଅଇଁଠାପତ୍ର ସବୁ ଦାଣ୍ଡକୁ ଫିଙ୍ଗି ଦିଆହେଲା । ଗୋଟିଏ ସ୍ତ୍ରୀ ଲୋକ ସେହି ଅଇଁଠାପତ୍ର ସବୁରେ ଲାଗିଥିବା ଭାତ ସବୁକୁ ଗୁଡ଼ି ଖାଉଥିଲା । ଏହି ସମୟରେ କୁକୁର ଦି' ଚାରିଟା ଆସି ତା'ହାତରୁ ସେହି ଅଇଁଠାପତ୍ର ସବୁକୁ କାମୁଡ଼ା କାମୁଡ଼ି ହୋଇ ଟାଣି ନେଇଗଲେ । ଏ ଦୃଶ୍ୟ ମୋ ପକ୍ଷରେ ଅସହ୍ୟ ହେଲା । ଏହାର ପ୍ରତିକାର ପାଇଁ ମନ ବିଦ୍ରୋହ କରି ଉଠିଲା । ଏହାର ପ୍ରତିକାରର ପନ୍ଥା ଖୋଜିଲି । ସାମ୍ୟବାଦର, ମାର୍କସବାଦର ନୀତିକୁ କାର୍ଯ୍ୟକାରୀ କଲେ ଏହା ଦୂର ହେବ ଶୁଣିଥିଲି । ତେଣୁ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେବାକୁ ସ୍ଥିରକଲି ।"

ଗୋକୁଳ ମୋହନଙ୍କ ଜୀବନ ସଂଗ୍ରାମର ଜୀବନ । ଦେଶକୁ ଭଲ ପାଇବାର ଜୀବନ । ସେ ଚାହିଁଥିଲେ କଂଗ୍ରେସରେ ରହି ପାରିଥାନ୍ତେ, ସ୍ୱାଧୀନତା ପରେ କେନ୍ଦ୍ରମନ୍ତ୍ରୀ, ଓଡ଼ିଶାରେ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ପଦ ଅଲଂକୃତ କରିଥାନ୍ତେ । କିନ୍ତୁ ସେ ଏକ ଦୁଃଖର ଜୀବନ, ଏକ ସଂଘର୍ଷର ପଥକୁ ସ୍ୱଇଚ୍ଛାରେ ଆବୋରିନେଇ ଜନଜୀବନ ସହିତ ନିଜକୁ ଓତଃପ୍ରୋତ ଜଡ଼ାଇ ଦେଇଛନ୍ତି ।

ଗୋକୁଳ ମୋହନଙ୍କ ସଂଗ୍ରାମ ଓଡ଼ିଶା ଇତିହାସର ଏକ ଅଂଶ ବିଶେଷ ବୋଲି ଗ୍ରହଣ କରିବାକୁ ହେବ । ପୁସ୍ତକଟିକୁ ଆହୁରି ସୁନ୍ଦର, ପଠନୀୟ ଓ ବର୍ଣ୍ଣାଢ଼୍ୟ କରିବାର ସୁଯୋଗକୁ ସେ ନିଜ କମ୍ୟୁନିଷ୍ଟ ସୁଲଭ ଗୁଣଯୋଗୁ ହରାଇଛନ୍ତି । ତ୍ୟାଗ ଓ ସେବାର ମହାନ୍ ମନ୍ତ୍ର ତାଙ୍କ ଜୀବନକୁ ମହନୀୟ କରିଛି । ସାହିତ୍ୟର କଳାତ୍ମକ ଭାବ, ଭାଷା ଓ ଭଙ୍ଗୀ ନଥାଇ ଏହା ଭାଷା ସାହିତ୍ୟ ପାଇଁ ଏକ ନିର୍ଦ୍ଦିଷ୍ଟ ସ୍ଥାନ ରଖେ—ଏଥିରେ କୌଣସି ସନ୍ଦେହ ନାହିଁ ।



# ମନ ଓ ତା'ର ନିୟନ୍ତ୍ରଣ

ଭାଷା ଓ ସାହିତ୍ୟ ସମ୍ପର୍କରେ ଲେଖିବାବେଳେ ମନର ନିୟନ୍ତ୍ରଣ କଥାଟି କେମିତି ଅଡୁଆ ଅଡୁଆ ଲାଗିବ ନିଶ୍ଚୟ । କାରଣ ବର୍ତ୍ତମାନ ସବୁକ୍ଷେତ୍ରରେ ଏକ ସ୍ୱର ଗୁଞ୍ଜରିତ ହେଉଛି । ତାହା ହେଉଛି ମୁକ୍ତଚିନ୍ତା (free thinking) ମୁକ୍ତ । ଚିନ୍ତା ସ୍ୱାଗତଯୋଗ୍ୟ ହୋଇପାରେ ; କିନ୍ତୁ ଏହି ଚିନ୍ତାରେ ବିଚାର ବିଭ୍ରାଟ ଦେଖାଦିଏ । ତେଣୁ ମୁକ୍ତ ଚିନ୍ତାରୁ ମୁକ୍ତ ହୋଇ ଆମକୁ ସଠିକ ଚିନ୍ତା (right thinking) କରିବାର ଆବଶ୍ୟକତା ରହିଛି । ସଠିକ ଚିନ୍ତା କରିବାବେଳେ ତା'ର ଭଲମନ୍ଦ ଦିଗପ୍ରତି ପ୍ରତି ଦୃଷ୍ଟି ଦେଇ ବିଚାରକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଗମ୍ଭୀର ଚିନ୍ତା (deep thinking) ଅପରିହାର୍ଯ୍ୟ । ଭାଷା ସାହିତ୍ୟ କ୍ଷେତ୍ରରେ ଏହି ଗମ୍ଭୀର ଚିନ୍ତାର ଆବଶ୍ୟକତା ବର୍ତ୍ତମାନ ବେଶୀ ଅନୁଭବ ହେଉଛି । କାରଣ ଯେଉଁମାନେ ସାହିତ୍ୟ କରୁଛନ୍ତି, ସେମାନଙ୍କର ସାମାଜିକ ଅଙ୍ଗୀକାରବଦ୍ଧତା ନ ଥିବା ପରି ଅନୁଭବ ହେଉଛି । ବିଚାରରେ, ଚିନ୍ତାରେ, କାର୍ଯ୍ୟରେ ଯେଉଁ ଏକନିଷ୍ଠ ଭାବନା ରହିବା ଦରକାର, ତାହା ପ୍ରାୟତଃ ଅନୁଭବ ହେଉନି । ଏହି ପରିପ୍ରେକ୍ଷୀରେ 'ମନ ଓ ତା'ର ନିୟନ୍ତ୍ରଣ' କରିବାର ଆବଶ୍ୟକତା ରହିଛି ।

ମନଃ ସଂଯମର ସମସ୍ତ ରହସ୍ୟଟିକୁ ଗୀତାରେ ମାତ୍ର ଦୁଇଟି ଶବ୍ଦରେ ବ୍ୟକ୍ତ କରାଯାଇଛି । ସେହି ଦୁଇଟି ଶବ୍ଦ ହେଲା 'ଅଭ୍ୟାସ' ଓ 'ବୈରାଗ୍ୟ' । ଆମେ କିପରି ମନଃ ସଂଯମ କରିପାରିବା ? ଏହା ଏକ ବ୍ୟକ୍ତିଗତ କାର୍ଯ୍ୟ । ତେଣୁ ବ୍ୟକ୍ତିଗତ ପ୍ରଚେଷ୍ଟା ଫଳରେ ହିଁ ମନକୁ ନିୟନ୍ତ୍ରଣ କରାଯାଇପାରେ । ପତଞ୍ଜଳି ଯୋଗସୂତ୍ରରେ କୁହାଯାଇଛି, "ମନଃ ସଂଯମ ପକ୍ଷରେ କ୍ଷତିକର କୌଣସି ଚିନ୍ତା ଉଠିଲେ ତା'ର ବିପରୀତ ଚିନ୍ତାର ସାହାଯ୍ୟ ଗ୍ରହଣ କରିବା ଉଚିତ ।"

ମନଃ ସଂଯମ ପାଇଁ ଶ୍ରୀମଦ୍ ଭଗବତ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯେଉଁ ଉପଦେଶ ଦେଇଛନ୍ତି, ସେଥିରୁ ତିନିଗୋଟି ମୌଳିକ ଶିକ୍ଷା ମିଳେ ।

(୧) ମନର ନିୟନ୍ତ୍ରଣ ସର୍ବଦା ଅତି କଠିନ କାର୍ଯ୍ୟ । (୨) ତଥାପି ମନଃ ସଂଯମ ସମ୍ଭବ । (୩) ମନଃ ସଂଯମର ସୁନିର୍ଦ୍ଧାରିତ ପଦ୍ଧତି ଅଛି ।

ମନଃ ସଂଯମ ବିନା ଜୀବନର କୌଣସି କ୍ଷେତ୍ରରେ ସ୍ଥାୟୀ ଉନ୍ନତି, ସମୃଦ୍ଧି ବା ଶାନ୍ତି ମିଳେ ନାହିଁ । ଏପରିକି ଅସଂଯମୀ ଲୋକମାନେ ତାଙ୍କର ପ୍ରାପ୍ତ ସମୃଦ୍ଧିକୁ ମଧ୍ୟ ଧରି ରଖିପାରନ୍ତି ନାହିଁ ।

ଯେ ପର୍ଯ୍ୟନ୍ତ ମନ ସହିତ ଆମର ଏକାତ୍ମବୋଧ ରହିଥିବ, ସେ ପର୍ଯ୍ୟନ୍ତ ମନକୁ ସଂଯତ କରାଯାଇପାରିବ ନାହିଁ । ଯେତେବେଳେ ଆମେ ମନକୁ ଦାର୍ଶନିକ ଚିନ୍ତା ସାହାଯ୍ୟରେ ନିଜଠାରୁ ବିଚ୍ଛିନ୍ନ କରିପାରିବା, ସେତେବେଳେ ତାକୁ ଆଉ ଠିଆ-ହେବାକୁ ସ୍ଥାନ ମିଳିବ ନାହିଁ । ସେତେବେଳେ ସେ ଆମର କ୍ଷତି କରିପାରିବ ନାହିଁ ।

'ମନ ଓ ତା'ର ନିୟନ୍ତ୍ରଣ' ଶୀର୍ଷକ ସ୍ୱାମୀ ବୁଧାନନ୍ଦଙ୍କ ଦ୍ୱାରା ଲିଖିତ ପୁସ୍ତକରେ ଏହାକୁ ପ୍ରାଞ୍ଜଳଭାବେ ବର୍ଣ୍ଣନା କରାଯାଇଛି । ଶ୍ରୀରାମକୃଷ୍ଣ ମଠ, ଭୁବନେଶ୍ୱରଙ୍କ ଦ୍ୱାରା ପ୍ରକାଶିତ ଏହି ପୁସ୍ତକଟି 'ମନ ଓ ତା'ର ନିୟନ୍ତ୍ରଣ'ରେ ଅମୂଲ୍ୟ ଯୋଗଦାନ ।



# ଆଞ୍ଚଳିକ ସଂହତିର ସୁରକ୍ଷା

ଆଞ୍ଚଳିକ ସଂହତିର ସୁରକ୍ଷା କାହିଁକି ? ଏ ପ୍ରଶ୍ନ ଆପଣଙ୍କୁ ଓ ମୋତେ ନିଶ୍ଚିତ ଭାବେ ଆନ୍ଦୋଳିତ କରିବ । ଆମେ ସବୁବେଳେ ଜାତୀୟ ସଂହତି କଥା କହୁଛୁ, କିନ୍ତୁ ଭାଷା ଭିତ୍ତିରେ ଗଠନ କରାଯାଇଥିବା ଓଡ଼ିଶା ପ୍ରଦେଶରେ ଆମ ଭିତରେ ସଂହତି ପ୍ରକାଶ ପାଉନାହିଁ । ଆମେ ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ହୋଇ ଭାଗ ଭାଗ ମନୋବୃତ୍ତି ପୋଷଣ କରୁଛୁ । ଓଡ଼ିଆ ଭାଷା ଓ ସାଂସ୍କୃତିକ ସୁରକ୍ଷା ଠିକ୍ ଭାବରେ ହୋଇ ପାରୁନି । ନିଜକୁ ଓଡ଼ିଆ ବୋଲି କହି ଗର୍ବ କରିବା, ନିଜର ଭାଷା ସାହିତ୍ୟ ପ୍ରତି ଅକୁଣ୍ଠ ଅନୁରକ୍ତି ପ୍ରକାଶ କରିବା ପ୍ରତି ଆମର ଆନ୍ତରିକତା ନାହିଁ । ଆମେ ବ୍ୟାସକବି ଫକୀରମୋହନଙ୍କର ଉକ୍ତି, "ମାତୃଭୂମି ମାତୃଭାଷା ଏ ଦୁହେଁ ଜନନୀ, ଭକ୍ତିଭରେ ସେବ ତାଙ୍କୁ ଦିବସ ରଜନୀ ।" କିମ୍ବା ପଲ୍ଲୀକବି ନନ୍ଦକିଶୋରଙ୍କର, "ସୁଖେ ଦୁଃଖେ ଗଡିଯିବେ ଲକ୍ଷ୍ମୀନା ସମୟେ, 'ଓଡ଼ିଆ' ଏ ନାମ ଶିରେ ଯେନ ହେ ନିର୍ଭୟେ ।" ଏହାକୁ ସମ୍ପୂର୍ଣ୍ଣ ପାଶୋରି ଦେଲୁଣି ।

ଓଡ଼ିଆ ଭାଷା ହିଁ ଆଞ୍ଚଳିକ ସଂହତିର ଯୋଗସୂତ୍ର । ଭାଷାର ବିକାଶ ଓ ବିସ୍ତାର ପ୍ରତି ଗୁରୁତ୍ୱ ନ ଦେଲେ, ଭାଷା କ୍ରମଶଃ ଲୋପ ପାଇଯାଏ । ଆମେ ଏ ବିଷୟରେ ସଚେତନ ନହେବା ଫଳରେ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ପଡ଼ୋଶୀ ରାଜ୍ୟମାନଙ୍କ ଅଧୀନକୁ ଚାଲିଯାଉଛି ବୋଲି ଖବର ପ୍ରକାଶିତ ହେଉଛି ଏବଂ ବିଧାନ-ସଭା ଗୃହରେ ଏ ବିଷୟରେ ବେଶ୍ ଗରମାଗରମ ଆଲୋଚନା ହେଉଛି । ଭାଷାର ସୁରକ୍ଷା ଓ ଭାଷାଭାଷୀ ଅଞ୍ଚଳକୁ ପଡ଼ୋଶୀ ରାଜ୍ୟକୁ ନ ଯିବାର ଦାୟିତ୍ୱ ଆମେ ସରକାରଙ୍କୁ ଦେଇ ବେଶ୍ ନିଶ୍ଚିନ୍ତ ହୋଇ ଯାଉଛେ । ଆମେ ସାଧାରଣ ନାଗରିକ-ମାନେ ଅନୁଭବ କରୁଛେ ଯେପରି ଆମର କୌଣସି ନୈତିକ ଦାୟିତ୍ୱ ନାହିଁ ।

ଓଡ଼ିଆ ଭାଷାର ଦାୟିତ୍ୱ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗମାନଙ୍କ ଉପରେ ଛାଡ଼ି ଦେଇ ଆମେ ନିଶ୍ଚିନ୍ତ । ଫଳରେ ଓଡ଼ିଆ ଭାଷାର ବ୍ୟାପକ ପ୍ରଚାର ଓ ପ୍ରସାର କ୍ରମଶଃ ସଙ୍କୁଚିତ ଓ ସୀମାବଦ୍ଧ ହେବାରେ ଲାଗିଛି । ଯେକୌଣସି ଭାଷାର ସମ୍ପ୍ରସାରଣ, ସେହି ଭାଷା ସାହିତ୍ୟକୁ ପୁଷ୍ଟ କରିଥାଏ । ଭାଷାର ଅଭିବୃଦ୍ଧି ନହେବା ଫଳରେ ସମଗ୍ର ଓଡ଼ିଶା ମଧ୍ୟରେ ଆଞ୍ଚଳିକ ସଂହତିର ଅଭାବ ପରିଲକ୍ଷିତ ହେଉଛି ।

ଓଡ଼ିଶା ସରକାର ଓଡ଼ିଆ ଭାଷାକୁ ସରକାରୀ ଭାଷା ରୂପେ ବ୍ୟବହାର କରିବା ପାଇଁ ଘୋଷଣା କରିଛନ୍ତି ଏବଂ ଓଡ଼ିଆ ଭାଷା ବିକାଶ ପରିଷଦ ଘୋଷଣା

କରିଛନ୍ତି । ବର୍ତ୍ତମାନର ଅତ୍ୟାଧୁନିକ ଗଣମାଧ୍ୟମ ଆମର ସାଂସ୍କୃତିକ ଅବକ୍ଷୟର ପଥକୁ ଉନ୍ମୁକ୍ତ କରି ଦେଉଛି । କ୍ରମଶଃ ଆମେ ବେଶି ଭାବରେ ପାଶ୍ଚାତ୍ୟ ସଭ୍ୟତାକୁ ଅନୁକରଣ କରିବାରେ ଲାଗୁଛୁ । ରାଜ୍ୟ ସାରା ଛତୁ ଫୁଟିବା ପରି ଇଂରାଜୀ ବିଦ୍ୟାଳୟ ଖୋଲାଯାଇ ପିଲାଦିନରୁ ପିଲାମାନଙ୍କୁ ନିଜ ଭାଷାଠାରୁ ଅଲଗା କରି ଦିଆଯାଉଛି । ଇଂରାଜୀ ଶିକ୍ଷାର ଆବଶ୍ୟକତା ରହିଛି । କିନ୍ତୁ କେବଳ ଇଂରାଜୀ ମାଧ୍ୟମ ବିଦ୍ୟାଳୟର ଶିକ୍ଷା ତରୁଣ ବଂଶଧରମାନଙ୍କୁ ନିଜର ଭାଷାଠାରୁ ସେମାନଙ୍କୁ ପୃଥକ କରୁନି ବରଂ ସେମାନଙ୍କ ମଧ୍ୟରେ ବ୍ୟକ୍ତିଗତ ସ୍ୱାର୍ଥ ଭାବନାକୁ ବେଶ୍ ଉଜ୍ଜୀବିତ କରି ଚାଲିଛି । ସେମାନେ ନିଜର ଭାଷା ପ୍ରତି, ନିଜର ମାତୃଭୂମି ପ୍ରତି ମନରେ ଶ୍ରଦ୍ଧା ଓ ଅନୁରକ୍ତି ପୋଷଣ କରୁନାହାନ୍ତି । ଏହା ବିରୁଦ୍ଧରେ ଜନମତ ଜାଗରଣ କରିବା ଦରକାର । କିନ୍ତୁ କିଏ କରିବ ? ଯେଉଁମାନେ ଭାଷାର ସୁରକ୍ଷାର ଧ୍ୱନୀ ଦେଉଛନ୍ତି, ସେମାନେ ବ୍ୟାପକ ଭାବେ ଇଂରାଜୀ ବିଦ୍ୟାଳୟ ଶିକ୍ଷାର ପୁରୋଧା ।

ସରକାରଙ୍କୁ ଭଲ ଓଡ଼ିଆ ବ୍ୟାକରଣ କରିବା ପାଇଁ ବାରମ୍ବାର ଅନୁରୋଧ କରାଯାଉଛି । ବିଭିନ୍ନ ଅଞ୍ଚଳର ପ୍ରଚଳିତ ଶବ୍ଦାବଳୀକୁ ନେଇ ଏକ ପୂର୍ଣ୍ଣାଙ୍ଗ ଭାଷାକୋଷ ପ୍ରଣୟନ କରିବାର ଆବଶ୍ୟକତା ବହୁଦିନରୁ ଅନୁଭୂତ ହେଉଥିଲେ ମଧ୍ୟ ଏ ଯାବତ୍ କୌଣସି ବିଶ୍ୱବିଦ୍ୟାଳୟ ଏ ଦିଗରେ କାର୍ଯ୍ୟ ଆରମ୍ଭ କରିନାହାନ୍ତି । ବିଦ୍ୟାଳୟ ଓ କଲେଜ ସ୍ତରରେ ଓଡ଼ିଆ ଭାଷାର ବ୍ୟାପକ ବ୍ୟବହାର ନହେବା ଫଳରେ, ତା'ର ପ୍ରଭାବ ସମାଜ ଉପରେ ପଡ଼ିବାକୁ ବାଧ୍ୟ ।

ନିଜ ଭାଷା ପ୍ରତି ପ୍ରତ୍ୟେକ ନାଗରିକର ସଚେତନତା ପ୍ରଥମ ଆବଶ୍ୟକତା ଏ ଦିଗରେ ସ୍ୱେଚ୍ଛାସେବୀ ଅନୁଷ୍ଠାନର ଗୁରୁଦାୟିତ୍ୱ ରହିଛି । ପ୍ରତ୍ୟେକ ଅଞ୍ଚଳରେ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ଏହାପ୍ରତି ଗୁରୁତ୍ୱ ଦେଇ କାର୍ଯ୍ୟ କରିବା ଉଚିତ ।

ଏ ଦିଗରେ ଅଗ୍ରଣୀ ଭୂମିକା ଉତ୍କଳ ସମ୍ମିଳନୀ ଗ୍ରହଣ କରିଛି । ଆସନ୍ତା ଅଗଷ୍ଟ ୧୨ ଓ ୧୩ ତାରିଖରେ ବ୍ରହ୍ମପୁରଠାରେ "ଓଡ଼ିଶାରେ ଆଞ୍ଚଳିକ ସଂହତିର ସୁରକ୍ଷା" ଶୀର୍ଷକ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହେବ । ଏହି ଆଲୋଚନାଚକ୍ରର ନିର୍ଯ୍ୟାସ ଯାହାହେଉନା କାହିଁକି ଆମର ସଚେତନତା ଓ ସକ୍ରିୟ ଭୂମିକା ଭାଷାକୁ ବୃଦ୍ଧି କରିବାରେ ଓ ଆଞ୍ଚଳିକ ସଂହତି ରକ୍ଷା କରିବାରେ ସାହାଯ୍ୟ କରିବ ଏଥିରେ ସନ୍ଦେହ ନାହିଁ । ଏ ଦିଗରେ ପ୍ରତ୍ୟେକ ଓଡ଼ିଆ ପଦକ୍ଷେପ ନେବା ଆଜିର ଆବଶ୍ୟକତା ନୁହେଁ କି ?

—

# ଭଗବତୀ ସ୍ମୃତି ସ୍ତମ୍ଭ

ଦୀପାବଳୀର ପୂର୍ବାହ୍ଣରେ ସତୀଚଉରା, କଟକରେ ଭଗବତୀ ସ୍ମୃତି ସ୍ତମ୍ଭ ନିର୍ମାଣ ହେବା ପାଇଁ ଶିଳାନ୍ୟାସ କରାହେବାର ନିମନ୍ତ୍ରଣ ପତ୍ରଟିଏ ପାଇଲି । ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦୀ, ସାମ୍ୟବାଦ ଚେତନାର ସୂତ୍ରଧର ହେଉଛନ୍ତି ଭଗବତୀ । କେବଳ ସେତିକି ନୁହେଁ, ଜାତୀୟ କଂଗ୍ରେସ ପରେ ଏକ ବିକଳ୍ପ ରାଜନୈତିକ ବିଚାର-ଧାରାର ପ୍ରବର୍ତ୍ତକ ଓ ତା'ର ସଫଳ ରୂପାୟନର ନାୟକ ଥିଲେ ଭଗବତୀ ଚରଣ ପାଣିଗ୍ରାହୀ । ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ଜନ୍ମଦାତା ଓ ପଥପ୍ରଦର୍ଶକଭାବେ ତାଙ୍କର ନାମ ଚିରସ୍ମରଣୀୟ ଓ ଚିରବନ୍ଦନୀୟ ।

ସ୍ୱାଧୀନତା ଆନ୍ଦୋଳନ, ଗଡ଼ଜାତ ଆନ୍ଦୋଳନ, କୃଷକ ଆନ୍ଦୋଳନ, ପ୍ରଗତିଶୀଳ ସାହିତ୍ୟ ଅନୁଷ୍ଠାନ ଗଠନ ଏବଂ ସର୍ବୋପରି ତାଙ୍କର ସାହିତ୍ୟ ସାଧନାରେ ଏକ ନୂତନ ବୈପ୍ଳବିକ ଦୃଷ୍ଟିକୋଣ ଓଡ଼ିଶାର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ତାଙ୍କୁ ଏକ ବିଶେଷ ସ୍ଥାନ ପ୍ରଦାନ କରେ ।

ତାଙ୍କର ମୃତ୍ୟୁ ହେବାର ୫୨ ବର୍ଷ ଗତ ହୋଇଯାଇଥିଲେ ମଧ୍ୟ ଏଯାବତ୍ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏ ଜାତି କୌଣସି ନିର୍ଦ୍ଦିଷ୍ଟ ପ୍ରଚେଷ୍ଟା କରି ନାହିଁ । ଏହା ଏ ଜାତିର ଦୁର୍ଭାଗ୍ୟ । ବିଳମ୍ବରେ ହେଲେ ମଧ୍ୟ ଭଗବତୀ ସ୍ମୃତି କମିଟି ତରଫରୁ ୨୩ ତାରିଖ ଦିନ ୧୧ଟାବେଳେ ଆରମ୍ଭ ହୋଇଥିଲା ସ୍ମୃତି ସ୍ତମ୍ଭ ନିର୍ମାଣ ପାଇଁ ଶିଳାନ୍ୟାସ । ଏହି ସଭାରେ ତାଙ୍କର ପ୍ରିୟବନ୍ଧୁ, ସାଥୀ, ମାର୍କସ୍‌ବାଦ ଦର୍ଶନର ପ୍ରବକ୍ତା ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ବିଜେତା ଶ୍ରୀ ଗୁରୁଚରଣ ପଟ୍ଟନାୟକ ସଭାପତି ଆସନ ଅଳଂକୃତ କରିଥିଲେ ।

'ମାଟିର ମଣିଷ'ର ରଚୟିତା, ତାଙ୍କର ଅଗ୍ରଜ କାଳନ୍ଦୀ ଚରଣଙ୍କ ସ୍ମୃତି ସ୍ତମ୍ଭ ନିକଟରେ ନିର୍ମାଣ ହେବା ପାଇଁ ଭଗବତୀଙ୍କ ସ୍ମୃତି ସ୍ତମ୍ଭର ଶିଳାନ୍ୟାସ ଯେତେବେଳେ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଶ୍ରୀ ଲୋକନାଥ ଚୌଧୁରୀ କଲେ, ସେତେବେଳେ ମନେ-ପଡ଼ିଯାଉଥିଲା ବିରଜୁ, ଛକଡ଼ିର କଥା, ଗୋବିନ୍ଦ ସର୍ଦ୍ଦାରର ଚରିତ୍ର । "ଆଉ ଜଣେ ଘିନୁଆ ଜନ୍ମ ନେଉ" ଏକଥା ସମବେତ ଶ୍ରୋତାମଣ୍ଡଳୀ ମଧ୍ୟରେ ଗୁଞ୍ଜରିତ ହେଉଥିଲା ।

ଉପସ୍ଥିତ ଅନେକ ପ୍ରତିଷ୍ଠିତ, ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରୀ ସଚ୍ଚି ରାଉତରାୟ, ମନମୋହନ ମିଶ୍ର, ବିଶ୍ୱନାଥ ପଣ୍ଡିତ, ଗିରିଜାଭୂଷଣ

ପଟ୍ଟନାୟକ, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଦୁର୍ଗା ଚରଣ ମହାନ୍ତି, ନନ୍ଦକିଶୋର ପଟ୍ଟନାୟକ, ବୈଷ୍ଣବ ପଟ୍ଟନାୟକ, ଶିବାଜୀ ପଟ୍ଟନାୟକ ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀ । ସେମାନେ ସ୍ୱାଧୀନତା ସଂଗ୍ରାମର ସ୍ମୃତି ସ୍ମରଣ କରି ଭଗବତୀଙ୍କର ଭୂମିକା ଓ ଯେଉଁ ଆଦର୍ଶ ପାଇଁ ସେ ସଂଗ୍ରାମ କରିଥିଲେ, ତା'ର ତଥ୍ୟ ବାଢ଼ିବାବେଳେ ତରୁଣ ପିଢ଼ିମାନଙ୍କ ନିମିତ୍ତ ଏହା ଥିଲି ଓଡ଼ିଆ ଜାତିର ଇତିହାସ ।

ପ୍ରଫେସର ଅବନୀ ବରାଳ ତାଙ୍କ ପ୍ରତି ଶ୍ରଦ୍ଧାସୁମନ ଅର୍ପଣ କରି କହିଥିଲେ ଯଦି ହଠାତ୍ ଭଗବତୀଙ୍କର ପ୍ରେତାତ୍ମା ଏଠାରେ ଆବିର୍ଭାବ ହୁଏ, ତେବେ ଉପସ୍ଥିତ ଶ୍ରୋତା ଓ ବକ୍ତାଙ୍କ ମଧ୍ୟରୁ କେତେଜଣ ରହିବେ, ତାହା ବିଚାର୍ଯ୍ୟ । କାରଣ କିଏ ସେହି ଆଦର୍ଶକୁ ବିଶ୍ୱାସ କରେ ?

ଆଦର୍ଶ ମରେନା । ସାମ୍ୟବାଦ ଦର୍ଶନର ଅନ୍ତ ନାହିଁ । ଯେ ପର୍ଯ୍ୟନ୍ତ ଏ ଜାତିର ଜଣେ ମଧ୍ୟ ଅଭୁକ୍ତ, ସେ ପର୍ଯ୍ୟନ୍ତ ସାମ୍ୟବାଦ ଦର୍ଶନର ତାତ୍ପର୍ଯ୍ୟ ରହିଛି ।

ଏ ଦେଶରେ ସକଳ ସମ୍ପଦ ଥିବା ସତ୍ତ୍ୱେ ଆମେ ଦରିଦ୍ର । ତଥାପି ଅନାହାର, ଅର୍ଦ୍ଧାହାର, ଅତ୍ୟାଚାରର ଶିକାର ଦରିଦ୍ର ମେହନତି ମଣିଷ, ଆଦିବାସୀ, ହରିଜନ । ଏଠାରେ ଏବେ ବି ଦିନରେ ଆତଯାତ କରନ୍ତି ଗୋବିନ୍ଦ ସର୍ଦ୍ଦାରମାନେ । ନାରୀ କେବଳ ମଣିଷର ଉପଭୋଗ୍ୟର ବସ୍ତୁଭାବେ ଯୌନ ଅତ୍ୟାଚାର ଓ ନିର୍ଯ୍ୟାତନାରେ ଶୀର୍ଷସ୍ଥାନ ଅଧିକାର କରିଛି ।

ପଚିଶ ବର୍ଷ ପରେ ସ୍ମୃତିଚାରଣ କଲାବେଳେ ସେହି ମହାନ୍ ଆତ୍ମାର ସ୍ୱର ଏବେ ବି ଗୁଞ୍ଜରିତ ହେଉଛି, "କିଏ ତୁମେମାନେ ଘିନୁଆ ହୋଇପାରିବ ?"

ନା, ଆମ୍ଭେମାନେ ଘିନୁଆ ନୋହୁଁ । ଆମ୍ଭେମାନେ ଦାସାନୁଦାସ । ଆମ୍ଭେମାନେ କଳୁ ବାହାସ୍ଫୋଟ ମାରି ସାହିତ୍ୟ ଲେଖୁଛୁ ଏବଂ କହୁଛୁ ଆମ ସାହିତ୍ୟରେ ନିଃସହାୟ ମଣିଷର ଅନ୍ତଃସ୍ୱର ପ୍ରସ୍ଫୁଟିତ । ଆମେ ଆମ ବଢ଼ିମା ଭିତରେ ବଞ୍ଚୁଥିବାବେଳେ ବତ୍ ରାସ୍ତାରେ ଗୋବିନ୍ଦ ସର୍ଦ୍ଦାରମାନଙ୍କର ଦାନବୀୟ ଲୀଳା, ଧାର୍ମିକ ମତାନ୍ଧତାର ରକ୍ତରେ ହୋଲିଖେଳ, ବହୁ ଜାତିକ ପୁଞ୍ଜିପତିମାନଙ୍କର ଦୂରଦର୍ଶନରେ ବିକଟ ଅଟ୍ଟହାସ୍ୟ!

ତଥାପି ଆମେ ବାହାସ୍ଫୋଟ ମାରି ଆମ ସାହିତ୍ୟର ବଡ଼ପଣ୍ଡା ସାଜିଛୁ ।



# ଉତ୍କଳ ବିଶ୍ୱବିଦ୍ୟାଳୟ

ଉତ୍କଳ ବିଶ୍ୱବିଦ୍ୟାଳୟର ନାଁ ଶୁଣି ହଠାତ୍ କେହି କେହି ଚମକି ପଡ଼ିବାକୁ ଆରମ୍ଭ କରିବେଣି । କ'ଣ ଘଟିଲା କି ? ବିଶ୍ୱବିଦ୍ୟାଳୟମାନଙ୍କରେ କ'ଣ ଘଟେ ବା ଘଟୁଛି, ତା'ର ଖବର ସାଧାରଣ ଲୋକେ ଆଦୌ ରଖନ୍ତି ନାହିଁ । ଯେଉଁ ରାଜ୍ୟରେ ସାକ୍ଷରତା ହାର ବହୁ ନିମ୍ନରେ, ସେଠି ବଡ଼ ବଡ଼ ପଣ୍ଡିତମାନଙ୍କ ଉପରେ କିଏ ବା କାହିଁକି ଆଖି ପକେଇବ । ସେଠାରେ ଯେଉଁମାନେ ପଢ଼ନ୍ତି ସେମାନେ ଭବିଷ୍ୟତରେ ବହୁ ବଡ଼ ବଡ଼ ସ୍କକଶରେ ବାହେଲ ହୁଅନ୍ତି । ତେଣୁ ସେମାନଙ୍କୁ ଯେଉଁମାନେ ପଢ଼ାଉଥିବେ ନିଶ୍ଚିତଭାବେ ବହୁ ବଡ଼ ବଡ଼ ପଣ୍ଡିତମାନ ହୋଇଥିବେ । ସେମାନଙ୍କର ଲେଖାମାନ ନିଶ୍ଚିତଭାବେ ଆନ୍ତର୍ଜାତିକ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିବ ଏବଂ ସେମାନେ ନିଜ ନିଜ ବିଭାଗର ସୁନାମକୁ ନିଶ୍ଚୟ ବଜାୟ ରଖୁଥିବେ । ଆମମାନଙ୍କ ମନରେ ଏଇ ଧାରଣା ବହୁ ଦିନରୁ ବସାବାନ୍ଧି ରହିଛି । କିନ୍ତୁ ପ୍ରକୃତପକ୍ଷେ ଏହା ନୁହେଁ ବୋଲି ଦିନେ ଜଣେ ବନ୍ଧୁ କଥାବାର୍ତ୍ତା ଛଳରେ କହି ପକାଇଲେ ।

ଯଦି ଅଧ୍ୟାପକମାନେ ସତରେ ବ୍ରିଲିଆଣ୍ଟ ହୋଇଥାନ୍ତେ, ତେବେ ସେମାନେ ସରକାରୀ କଲେଜକୁ ଡରନ୍ତେ କାହିଁକି ? ବିଶ୍ୱବିଦ୍ୟାଳୟରେ ଅଧ୍ୟାପକମାନେ କ୍ଲାସ ନିଅନ୍ତି ନାହିଁ, ରିସର୍ଚ୍ଚ ନାମରେ ଧରାଧରିରେ ପି.ଏଚ.ଡି. ମିଳେ ଏବଂ ନିଜେ ପଛବାଟେ ଯୋଗ୍ୟତାମାନ ନଥାଇ ଅଧ୍ୟାପକ ଆସନମାନଙ୍କରେ ମଣ୍ଡିତ ହୋଇଛନ୍ତି ଶୁଣି କେମିତି କେମିତି ମନଟା ଖଟା ଲାଗିଲା । ଏତେ ବଡ଼ ବଡ଼ ପଣ୍ଡିତ ଅଥଚ ଶ୍ରେଣୀ ନିଅନ୍ତି ନାହିଁ । ରିସର୍ଚ୍ଚ ନାହିଁ । କୌଣସି ଆନ୍ତର୍ଜାତିକ ପତ୍ରପତ୍ରିକାରେ ଲେଖା ପ୍ରକାଶ ହୁଏନି, ଏହାଶୁଣି ଏମାନେ କେମିତି ସେହି ଆସନମାନ ଅଳଂକୃତ କଲେ ପଚାରିବାରୁ ବନ୍ଧୁ କହିଲେ, 'ରାଜନୀତି, ''ସବୁ ରାଜନୀତିର କରାମତି । ଅଧ୍ୟାପକ ନିଯୁକ୍ତି ପାଇଁ ମାନଦଣ୍ଡ କାହିଁ ? ଭାଇସ ଚାନସେଲର ଅର୍ଥାତ୍ କୁଳପତିମାନେ ତଦାରଖ କରିବା କଥା । ସେମାନଙ୍କର ସମୟ ନାହିଁ । ପ୍ରଫେସରମାନେ କେବେ କୌଣସି ଜାତୀୟ ବା ଆନ୍ତର୍ଜାତୀୟ ବିଷୟ ଉପରେ ମତ ଦେଲେଣି ଦେଖିଛନ୍ତି ? କୌଣସି ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ପତ୍ରପତ୍ରିକାରେ କେହି ଅଧ୍ୟାପକଙ୍କର ଲେଖା ବାହାରିଛି ଓ ଆଦୃତ ହୋଇଛି ବୋଲି କେବେ ଆପଣ ଶୁଣିଛନ୍ତି ? ଯଦି ଏମିତି ହୋଇଥାନ୍ତା, ତେବେ ନିଶ୍ଚିତ ଆପଣ ସେମାନଙ୍କର ଫଟୋ ଓ କୃତି ଖବର-କାଗଜରୁ ଦେଖିଥାନ୍ତେ ।''

ବନ୍ଧୁଙ୍କର କଥାଶୁଣି ମନରେ ଦୁଃଖ ହେଲା । ଗୋଟିଏ ଜାତିକୁ ଦିଗ ନିର୍ଦ୍ଦେଶ ଦେବା ଓ ଠିକ୍ ବାଟରେ ପରିଚାଳିତ କରିବାର ଦାୟିତ୍ୱ ଅଧ୍ୟାପକ ମାନଙ୍କର, ଶିକ୍ଷକମାନଙ୍କର । ଦୁର୍ଭାଗ୍ୟର କଥା, ଏ ଦିଗରେ ସେମାନଙ୍କର ସାମାନ୍ୟତମ ଚେଷ୍ଟା ନାହିଁ । ଅଥଚ ଛାତ୍ରମାନଙ୍କର ଭବିଷ୍ୟତ କିପରି ଆଲୋକରୁ ଅନ୍ଧାର ଭିତରେ ପଶି ଯାଉଛି, ତାହା ଦେଖାଯାଉଛି ।

ଏଠାରେ ଗାନ୍ଧିଜୀଙ୍କର ଶିକ୍ଷା ସଂପର୍କରେ ଉକ୍ତି ଉଦ୍ଧାର କରୁଛି । "ମନୁଷ୍ୟ ସମାଜର ସେବା ଲାଗି ଯାହା କିଛି ଉପଯୋଗୀ ସେହି ସବୁ କିଛିରେ ଯାବତୀୟ ପ୍ରଶିକ୍ଷଣକୁ ଆମେ ଜ୍ଞାନବୋଲି କହିବା ଏବଂ ଏହି ଆମ ଜୀବନର ମଧ୍ୟ ଯାବତୀୟ ପ୍ରକାର ଦାସତ୍ୱରୁ ମୁକ୍ତିଲାଭ କରିବାକୁ ମୁକ୍ତି ବୋଲି କହିବା ।"

ସେ ଦାସତ୍ୱ କାହାକୁ କୁହାଯାଏ ତା'ର ଉଲ୍ଲେଖ କରି କହିଛନ୍ତି— "ଦାସତ୍ୱ ଦୁଇ ପ୍ରକାର; ବାହାରର କୌଣସି ଆଧିପତ୍ୟ ପାଖରେ ଦାସତ୍ୱ ଏବଂ ଆପଣାର କୃତ୍ରିମ ଆବଶ୍ୟକତାଗୁଡ଼ିକ ପାଖରେ ମଧ୍ୟ ଦାସତ୍ୱ ।"

ଏହି ଦାସତ୍ୱରୁ ମୁକ୍ତି ପାଇବାର ଜ୍ଞାନ ହେଉଛି ଶିକ୍ଷା ଓ ଯେଉଁମାନେ ଏହି ଶିକ୍ଷା ପ୍ରଦାନ କରୁଛନ୍ତି, ସେମାନେ ପ୍ରକୃତ ଶିକ୍ଷକ ।

ଆମ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ରାଜନୀତି ବ୍ୟୂହର ଆଧିପତ୍ୟ ପାଖରେ ଦାସତ୍ୱ ଓ ନିଜ ନିଜର କୃତ୍ରିମ ଆବଶ୍ୟକତାଗୁଡ଼ିକ ନିକଟରେ ଦାସତ୍ୱକୁ ଗ୍ରହଣ କରି ନେଇଥିବାରୁ ଉଚ୍ଚକୋଟୀର ଗବେଷଣାଲବ୍ଧ ଜ୍ଞାନ ପ୍ରକାଶ ପାଉନାହିଁ ବୋଲି ଭାବିବା କି ? ଏ ଦିଗରେ ପଦକ୍ଷେପ ନ ନେଲେ ଭବିଷ୍ୟତ ବଂଶଧରମାନେ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାକୁ ଆଗ୍ରହୀ ହେବେ କି ? ଆମ ଉତ୍କଳ ବିଶ୍ୱବିଦ୍ୟାଳୟ ସଂପର୍କରେ ଠିକ ନଥି ଜାଣିବାର ସୁଯୋଗ ପାଇବା ପାଇଁ ବୌଦ୍ଧିକ ବିତର୍କର ଆବଶ୍ୟକତା ରହିଛି ଏବଂ ଏହା ଆମ ଭାଷା, ସଂସ୍କୃତି ଓ ସ୍ୱାଭିମାନକୁ ଋଦ୍ଧିମନ୍ତ କରିବ ବୋଲି ଆମେ ଆଶା କରୁଛୁ ।

—

# ବେଦରଶ୍ମି

ବେଦରଶ୍ମି ଏକ ପତ୍ରିକାର ନାମ । ଓଡ଼ିଆ ଭାଷାରେ ଭୁବନେଶ୍ୱରରୁ ବେଦରଶ୍ମି ପ୍ରକାଶନ ତରଫରୁ ଆର୍ଯ୍ୟ ସମାଜ, ଭୁବନେଶ୍ୱର-୭ ଦ୍ୱାରା ପ୍ରକାଶିତ ହେଉଥିବା ମାସିକ ବୈଦିକ ପତ୍ରିକା । ମଇ-ଜୁନ୍ ୧୯୯୫ ସଂଖ୍ୟାଟି ସ୍ୱାମୀ ସତ୍ୟପ୍ରକାଶ ବିଶେଷାଙ୍କ ରୂପେ ନାମିତ ହୋଇଛି ।

ଓଡ଼ିଆ ପତ୍ରପତ୍ରିକାରେ ଏହା ଏକ ବହୁ ଚର୍ଚ୍ଚିତ ନାମ ନୁହେଁ ବା ବହୁଳ ଭାବରେ ବିକ୍ରି ହେବାର ଦେଖାଯାଏ ନାହିଁ । କିନ୍ତୁ ଏ ପତ୍ରିକାଟି ଯେ ଗୁଣାତ୍ମକ ଦୃଷ୍ଟିରୁ ଏକ ମୂଲ୍ୟବାନ ପତ୍ରିକା, ଏହା ଯେ କେହି ପାଠକ ପଢ଼ିବାମାତ୍ରେ ସ୍ୱୀକାର କରିବେ ।

ସ୍ୱାମୀ ସତ୍ୟପ୍ରକାଶ କିଏ ? ଏ ପ୍ରଶ୍ନଟି ଅନେକ ବ୍ୟକ୍ତି ନିଶ୍ଚିତ ପଚାରିବେ । ତାର କାରଣ ଭାଷା, ସାହିତ୍ୟ ଓ ସଂସ୍କୃତି ବିଷୟରେ ଅଭିରୁଚି ରଖିଥିବା ଓ ସେ ସମ୍ପର୍କରେ ଜାଣିଥିବା ଲୋକମାନଙ୍କ ସଂଖ୍ୟା ସୀମିତ । ସ୍ୱାମୀ ସତ୍ୟପ୍ରକାଶ ସରସ୍ୱତୀଙ୍କର ଓଡ଼ିଶା ସହିତ ସମ୍ପର୍କ ବହୁବେଶୀ । ସେ ବହୁଥର ଓଡ଼ିଶା ଆସି ବିଭିନ୍ନ ବିଶ୍ୱବିଦ୍ୟାଳୟ, କଲେଜ, ଆର୍ଯ୍ୟସମାଜ ଓ ଅନ୍ୟାନ୍ୟ ଅନୁଷ୍ଠାନରେ ବକ୍ତୃତା ଦେଇଛନ୍ତି ।

ସ୍ୱାମୀ ସତ୍ୟପ୍ରକାଶ ସରସ୍ୱତୀ ଥିଲେ ଏଲ୍ଲାବାଦ ବିଶ୍ୱବିଦ୍ୟାଳୟ ରସାୟନ ବିଭାଗର ଭୂତପୂର୍ବ ମୁଖ୍ୟ ଅଧ୍ୟାପକ, ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି, ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ ସୁଲେଖକ ୰ଗଙ୍ଗାପ୍ରସାଦ ଉପାଧ୍ୟାୟଙ୍କର ସୁପୁତ୍ର, ମହର୍ଷି ଦୟାନନ୍ଦ ସରସ୍ୱତୀଙ୍କ ଦ୍ୱାରା ପ୍ରତିଷ୍ଠିତ ଆର୍ଯ୍ୟ ସମାଜର ସନ୍ନ୍ୟାସୀ ପ୍ରବର, ପ୍ରଚଣ୍ଡ ବାଗ୍ମୀ ଓ ଋଗ୍‌ବେଦର ଇଂରାଜୀ ଭାଷ୍ୟକାର । ସେ ୰ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀଙ୍କ ସହିତ ଅଗଷ୍ଟ ଆନ୍ଦୋଳନ ସମୟରେ ଏକା ଜେଲରେ ରହିଥିଲେ ।

ସେ ରସାୟନ ବିଭାଗର ମୁଖ୍ୟ ଅଧ୍ୟାପକ ପଦରୁ ଅବ୍ୟାହତି ନେଇ ସନ୍ନ୍ୟାସ ନେଇଥିଲେ । ତାଙ୍କର ଗେରୁଆ ବସ୍ତ୍ର ଧାରଣକୁ ଲକ୍ଷ୍ୟ କରି କେତେକ ଅଧ୍ୟାପକ ବନ୍ଧୁ ଦୁଃଖ କରିବା ଯୋଗୁ ସେ କହିଥିଲେ, "ଏହି ଗେରୁଆ ବସ୍ତ୍ରର ରଙ୍ଗ ମୃତ୍ୟୁ ପରେ ଚିତାଗ୍ନିର ସ୍ମରଣ ଆଣିଦିଏ । ଆମ ସମସ୍ତଙ୍କୁ ଦେହତ୍ୟାଗ କରିବାକୁ ପଡ଼ିବ, ଶେଷ ପର୍ଯ୍ୟନ୍ତ ସାଂସାରିକ ଜଞ୍ଜାଳରେ ଲାଗି ରହି ତିରସ୍କୃତ ହୋଇ

ସଂସାରରୁ ବିଦାୟ ନେବା ଅପେକ୍ଷା ଗୌରବପୂର୍ଣ୍ଣ ଭାବରେ ପ୍ରସ୍ଥାନ କରିବା ଶ୍ରେୟସ୍କର ।"

ବେଦରଶ୍ମି ପତ୍ରିକାରେ ଏହି ମହାନ୍ ବ୍ୟକ୍ତିଙ୍କର ଜୀବନ, କେତେଗୁଡ଼ିଏ ଭାଷଣ ପ୍ରବନ୍ଧ ହୋଇଛି । ଏହା ନିଃସନ୍ଦେହରେ ଅତ୍ୟନ୍ତ ଉପାଦେୟ । ବହୁ ପୁସ୍ତକର ରଚୟିତା ସ୍ୱାମୀ ସତ୍ୟପ୍ରକାଶ ଜଣେ ବିଶିଷ୍ଟ ବୈଜ୍ଞାନିକ ହୋଇ ସନାତନ ଧର୍ମର ପ୍ରଚାର ଓ ପ୍ରସାର କାର୍ଯ୍ୟରେ ମନୋନିବେଶ କରିଥିଲେ । ସେ 'ବେଦ' ସମ୍ପର୍କରେ କହିଥିଲେ, "ବେଦ ସମଗ୍ର ମାନବ ସମାଜର ସମ୍ପତ୍ତି । ଧରିତ୍ରୀରେ ପ୍ରଥମେ ଜନ୍ମଲାଭ କରିଥିବା ଅଳ୍ପ ଯୋଗ୍ୟତମ ଆତ୍ମା ତାକୁ ଅନୁଭବ କରିଥିଲେ । ଆମେ ସମସ୍ତେ ସେମାନଙ୍କର ବଂଶଧର । ସଂସାରର ପ୍ରତ୍ୟେକ ବ୍ୟକ୍ତି ବେଦକୁ ନିଜର ବୋଲି ଦାବି କରିପାରେ । ସମସ୍ତେ ସେଥିରୁ ପ୍ରେରଣା ଲାଭ କରନ୍ତୁ । ବେଦ ମାନବୀୟ ମର୍ଯ୍ୟାଦାର ମୂଳସ୍ରୋତ । ମାନବର ଧର୍ମ ଏକ, ତାହା ପ୍ରୀତି, ଭ୍ରାତୃତ୍ୱ, ଶାନ୍ତି, ସତ୍ୟ, ପବିତ୍ରତା ଓ ଆସ୍ତିକତା ଉପରେ ପର୍ଯ୍ୟବେସିତ ।"

ବେଦରଶ୍ମି ଓଡ଼ିଆ ପାଠକମାନଙ୍କର ପଠନଯୋଗ୍ୟ ଓ ଶିକ୍ଷଣୀୟ ଏକ ପତ୍ରିକା । ଏହାର ବହୁଳ ଆଦର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଋଦ୍ଧିମନ୍ତ କରିବ ।



# ପଣ୍ଡିତ ନୀଳକଣ୍ଠ ଜୟନ୍ତୀ

ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ତରଫରୁ ଗତ ୫ ତାରିଖ ଦିନ ରାଜ୍ୟ ସୂଚନା ଭବନରେ ଏକ ଜୟନ୍ତୀ ସମାରୋହ ଅନୁଷ୍ଠିତ ହୋଇଥିଲା । ଆଧୁନିକ ଉତ୍କଳର ଧର୍ମ ଓ କର୍ମଗୁରୁ ଭାବରେ ସର୍ବଜନବନ୍ଦିତ ପଣ୍ଡିତ ନୀଳକଣ୍ଠଙ୍କର ଏହି ଜୟନ୍ତୀ ଉତ୍ସବରେ କତିପୟ ଶ୍ରୋତୃମଣ୍ଡଳୀଙ୍କ ଉପସ୍ଥିତି ମନରେ କ୍ଷୋଭ ଓ ଦୁଃଖ ଜାତ କରୁଥିଲା । ଯେଉଁ କେତେଜଣ ବର୍ଷୀୟାନ ବ୍ୟକ୍ତିବିଶେଷ ଯୋଗଦେଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରୀ ବିଜୟ ପାଣି, ନିତ୍ୟାନନ୍ଦ ମହାପାତ୍ର, ଗଙ୍ଗାଧର ପାଇକରାୟ । ଏମାନେ ସମସ୍ତେ ସ୍ୱାଧୀନତା ସଂଗ୍ରାମୀ । ପଣ୍ଡିତ ନୀଳକଣ୍ଠଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ଓ ସୁବିଧା ଲାଭକରି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ତେଣୁ ସେମାନଙ୍କର ଉପସ୍ଥିତି ସ୍ୱାଭାବିକ ଥିଲା ବୋଲି କୁହାଯାଇପାରେ । କିନ୍ତୁ ପ୍ରକୃତପକ୍ଷେ ପୂଜ୍ୟପୂଜାକୁ ସମ୍ମାନ ଜଣାଇ ପଣ୍ଡିତ ନୀଳକଣ୍ଠଙ୍କ ପ୍ରତି ଶ୍ରଦ୍ଧା ଥିବାହେତୁ ଏମାନେ ବୟସାଧିକ୍ୟ ସତ୍ତ୍ୱେ ସେଠାରେ ଉପସ୍ଥିତ ଥିଲେ । ରାଜଧାନୀରେ ଲକ୍ଷ ଲକ୍ଷ ଲୋକ ବାସ କରୁଥିବା ସମୟରେ, ଉତ୍କଳ ବିଶ୍ୱବିଦ୍ୟାଳୟ ଥିବାବେଳେ, ଅନେକ କଲେଜ ରହିଥିବା ସମୟରେ ସୂଚନାଭବନ ପ୍ରେକ୍ଷାଳୟ ନୀଳକଣ୍ଠଙ୍କ ଜୟନ୍ତୀରେ ପୂର୍ଣ୍ଣ ନହେବା କ୍ଷୋଭର ବିଷୟ । ଏହା ଆମ ଭାଷା ସାହିତ୍ୟ ଓ ଜାତି ପ୍ରତି ଅବମାନନା ଓ ହେୟଭାବ । କାରଣ ପଣ୍ଡିତ ନୀଳକଣ୍ଠ ଥିଲେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏକ ଚଳନ୍ତି ବିଶ୍ୱକୋଷ । ତାଙ୍କଠାରେ ସଂସ୍କାରକ, ଦାର୍ଶନିକ ଓ କବି ପ୍ରତିଭାର ସମନ୍ୱୟ ଘଟିଥିଲା । ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରଧାନ ଆଚାର୍ଯ୍ୟ ପଣ୍ଡିତ ନୀଳକଣ୍ଠ ପଞ୍ଚସଖା ରୂପୀ ସୌରମଣ୍ଡଳ ସମଗ୍ର ଓଡ଼ିଶାର ରାଜନୀତି, ସାହିତ୍ୟ, ଦର୍ଶନକୁ ଆଚ୍ଛନ୍ନ କରିଥିଲା, ଏହାକୁ ଅସ୍ୱୀକାର କରାଯାଇ ପାରେନା ।

ଓଡ଼ିଆ ପ୍ରାଣ ପଣ୍ଡିତ ନୀଳକଣ୍ଠ "ଓଡ଼ିଆ ପରି ଆଉ ଗୋଟିଏ ପ୍ରାଚୀନ ଓ ଜୀବନ୍ତ ମାନବ ଗୋଷ୍ଠୀ ପୃଥିବୀରେ ଅଛି କି ନାହିଁ ସନ୍ଦେହ । ଓଡ଼ିଶା ପୁଣ୍ୟଭୂମି ।" କେବଳ କହି ନାହାନ୍ତି ବରଂ ଭାଷା, ସାହିତ୍ୟ, ସଂସ୍କୃତିରେ, ଧର୍ମ, ସମାଜ ଓ ଶାସନ ବ୍ୟବସ୍ଥାରେ ତଥା ନୀତିବୋଧ, ସୌନ୍ଦର୍ଯ୍ୟ, ରୁଚି ଓ ଆଚାର ବ୍ୟବହାରରେ ଯାହା କିଛି, ଓଡ଼ିଆଙ୍କର ନିଜସ୍ୱ, ଯାହା କିଛି ସହିତ ଓଡ଼ିଶା ମାଟିର ଅଚ୍ଛେଦ୍ୟ ସମ୍ପର୍କ ଅଛି—ତାହା ପ୍ରତି ପଣ୍ଡିତ ନୀଳକଣ୍ଠଙ୍କର ନିବିଡ଼ ଅନୁରାଗ ଥିଲା ।

ଭାଷା ଓ ସାହିତ୍ୟ ହିଁ ସମାଜ ପ୍ରଗତିର ମୂଳଭିତ୍ତି, ଏହାକୁ ବୁଝାଇବାକୁ ସେ ତାଙ୍କର "ଓଡ଼ିଆ ସାହିତ୍ୟର କ୍ରମ ପରିଣାମ" ଗ୍ରନ୍ଥରେ କହିଛନ୍ତି—"ସମାଜ ବିକାଶର ପ୍ରକାଶ ହେଉଛି ସାହିତ୍ୟ । ମାନବର ଅନ୍ୟ ସହିତ ସମ୍ପର୍କରେ ସମାଜର ବିକାଶ । ଏହି ସମାଜ ବା ସାହିତ୍ୟର ବିକାଶ ସହିଁରେ ପ୍ରତିଫଳିତ ହୁଏ, ଅନ୍ୟ ସହି ବ୍ୟବହାରିଦରେ ମାନବର ଇଚ୍ଛା ବା ଗତି ସହିଁରେ ପ୍ରକାଶ ପାଏ, ତାହା ସାହିତ୍ୟ । ତାଙ୍କ ବିଚାରରେ ଗୃହିଣୀ, ଚଳଣୀ ଓ ଚମକ—ଏହି ତିନିଗୋଟିରେ ସମାଜର ସ୍ପଷ୍ଟ ପ୍ରକାଶ ପାଏ । ଗୃହିଣୀ, ଚଳଣୀ ଓ ଚମକକୁ ପରମ୍ପରା, ପରିସ୍ଥିତି ଓ ପୂର୍ବଦୃଷ୍ଟି ନାମରେ ଅଭିହିତ କରି ସେ କହିଛନ୍ତି, "ସାହିତ୍ୟରେ ସମାଜର ଯେଉଁ ବ୍ୟକ୍ତିତ୍ୱଟି ପ୍ରକାଶିତ ହୁଏ, ତାକୁ ସାଧାରଣ କଥାରେ କହନ୍ତି 'ବିଦ୍ୟା' । ବିଦ୍ୟାବନ୍ତ ଲୋକ ସମାଜର ପରିଚାୟକ ତଥା ନିୟାମକ । ଏହି ବିଦ୍ୟାରେ ପରମ୍ପରା, ପରିସ୍ଥିତି ଓ ପୂର୍ବଦୃଷ୍ଟି ନିଷ୍ଠାରେ ପ୍ରକାଶ ପାଏ । ପ୍ରକାଶରେ ପରମ୍ପରାର ଭିତ୍ତି ସଙ୍ଗେ ପରିସ୍ଥିତିର ସଂଗତି, ପରମ୍ପରା ହିଁ ପୁଣି ପରିସ୍ଥିତିକୁ ପ୍ରଭାବିତ କରେ ଓ ଆଦର୍ଶ ବା ଯଥାର୍ଥ ବିଦ୍ୟାର ପୂର୍ବଦୃଷ୍ଟିରେ ସେହି ପରିସ୍ଥିତି ନିୟମିତ ହୁଏ ।"

ପଣ୍ଡିତ ନୀଳକଣ୍ଠଙ୍କ ସାହିତ୍ୟ ଚିନ୍ତନ ଏ ଲେଖାର ଉଦ୍ଦେଶ୍ୟ ନୁହେଁ । ଯେଉଁ ମନୀଷୀ ନିଜର ସ୍ୱକୀୟ ସାଧନା ଓ କର୍ମ ବଳରେ ଓଡ଼ିଆ ଜାତିର ସ୍ୱାଭିମାନତା, ଓଡ଼ିଆ ଭାଷା ଓ ସାହିତ୍ୟର ସଶକ୍ତ ପ୍ରହରୀ, ଓଡ଼ିଆ ବ୍ୟକ୍ତିତ୍ୱର ଉଜ୍ଜ୍ୱଳତମ ଉଦାହରଣ ହୋଇ ରହି ଯାଇଛନ୍ତି, ତାଙ୍କ ପ୍ରତି ଶ୍ରଦ୍ଧା ସୁମନ ଅର୍ପଣ କରିବାକୁ ଏ ଜାତି କାହିଁକି ପରାଙ୍ମୁଖ—ଏହା କ'ଣ ଭାବିବା କଥା ନୁହେଁ କି ?



# ଶହୀଦ୍ ଦିବସ

ଅକ୍ଟୋବର ୩୦ ତାରିଖ ଦେଶର ଜନକ ମହାତ୍ମା ଗାନ୍ଧୀଙ୍କର ତିରୋଧାନ ଦିବସ ଭାବେ ସାରା ଦେଶରେ ପାଳନ କରାହୋଇଛି । ଏ ଦିବସଟିକୁ ନାଁ ଦିଆଯାଇଛି ଶହୀଦ୍ ଦିବସ । ଦେଶର ସ୍ୱାଧୀନତା ପାଇଁ, ଏ ଭାରତ ଭୂମିକୁ ବିଦେଶୀ ଶାସନରୁ ମୁକ୍ତ କରିବା ପକାଶେ ଯେଉଁମାନେ ନିଜ ଜୀବନକୁ ଉତ୍ସର୍ଗ କରିଛନ୍ତି, ସେମାନଙ୍କ ଉଦ୍ଦେଶ୍ୟରେ ଏହି ଦିବସ ।

ଗାନ୍ଧିଜୀ କେବଳ ପ୍ରତୀକ ମାତ୍ର । ବର୍ଷକେ ଥରେ ଶହୀଦ୍‌ମାନଙ୍କୁ ମନେପକାଇବା ପାଇଁ ଆମର ଏହି ଯେଉଁ ଚେଷ୍ଟା, ତାହା କେବଳ ଔପଚାରିକ ଭାବେ ସ୍ମୃତି ପାଳନ ନିମିତ୍ତ କରାଯାଉଛି ।

ସ୍ୱାଧୀନତା ସଂଗ୍ରାମ ସମୟରେ ଅନେକ ଲୋକ ଶହୀଦ୍ ହୋଇଛନ୍ତି । ଏଥିରେ କେବଳ ନେତୃସ୍ଥାନୀୟ ବ୍ୟକ୍ତି ବିଶେଷ ନ ଥିଲେ, ବରଂ ଭାରତର ଅଗଣିତ ସାଧାରଣ ଜନସାଧାରଣ ଏହି ସଂଗ୍ରାମରେ ଯୋଗ ଦେଇଛନ୍ତି ।

ନିଜକୁ ଭୁଲିଯାଇ ଦେଶ ପାଇଁ ନିଜର ସାମାନ୍ୟତମ ସୁଖ ସୁବିଧାକୁ ମଧ୍ଯ ଭୁଲିଯାଇଛନ୍ତି । ଇତିହାସ ଏପର୍ଯ୍ୟନ୍ତ ସେମାନଙ୍କର ସଠିକ ମୂଲ୍ୟାଙ୍କନ କରିନି କିମ୍ବା ସେମାନେ ଇତିହାସ ପୃଷ୍ଠାରେ ସ୍ଥାନ ପାଇନାହାନ୍ତି । ଯେଉଁମାନଙ୍କର ଦାୟିତ୍ୱ, ସେମାନେ ନୂଆ କରି ଇତିହାସ ସାହିତ୍ୟ ସୃଷ୍ଟି କରିବାକୁ ଯେଉଁ ଅଭିଳାଷ ରଖିବା ଉଚିତ, ତାହା ରଖିନାହାନ୍ତି ।

ସହରୀ ସଭ୍ୟତାର ଚାକଚକ୍ୟ ମଧ୍ୟରେ ଆମେ ଗାଁ ଭୂଇଁ କଥା ଭୁଲିଯିବା ପରି, ଶହୀଦ୍‌ମାନେ ଆମର ବିସ୍ମୃତିଗର୍ଭ କଲେଣି । ପୂର୍ବପୁରୁଷଙ୍କ ଦାୟାଦ୍ ଭାବେ ଆମେ ବାହାବା ନେବାର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ ।

ଆମ ଇତିହାସ ପୃଷ୍ଠାରେ ସେମାନଙ୍କର ନାମ ଥାଉ ବା ନ ଥାଉ, କେତେକ ସ୍ଥାନରେ ଲୋକମାନଙ୍କ ମନଗହନରେ ସେମାନେ ଆସ୍ଥାନ ଜମେଇ ରହିଛନ୍ତି ।

୧୯୪୨ ମସିହା ଅଗଷ୍ଟ ମାସରେ ଯେଉଁ 'ଭାରତ ଛାଡ଼' ଆନ୍ଦୋଳନର ଡାକରା ଦିଆଯାଇ 'କର ବା ମର'ର ଆହ୍ୱାନ କରାହୋଇଥିଲା, ସେହି ଆହ୍ୱାନକୁ କେହି ଏଡ଼ି ଦେଇପାରି ନ ଥିଲେ । କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ, ବଣ ପାହାଡ଼ ଘେରା ଆଦିବାସୀ ଅଞ୍ଚଳରୁ, ତାଳ ଖଜୁରୀ ନାରିକେଳପୂର୍ଣ୍ଣ ସମତଳ ଅଞ୍ଚଳ ପର୍ଯ୍ୟନ୍ତ ସେହି

ଭାରତ ଛାଡ଼ ଆନ୍ଦୋଳନର ଆହ୍ୱାନ ଗୁଞ୍ଜରିତ ହୋଇଉଠିଥିଲା । ଭାରତ ମାତାର ମାନ, ଯଶ, ଗୌରବକୁ ଫେରାଇ ଆଣିବାକୁ, ନିଜ ଭୂଇଁରେ ଅଧିକାରୀ ନିଜେ ହେବାକୁ ଅହିଂସା ସଂଗ୍ରାମରେ ଝାମ୍ପ ଦେଇଥିଲେ ଦଳ ଦଳ ମଣିଷ । ବାଛବିଚାର ନ ଥିଲା; ଧନୀ ଦରିଦ୍ରର ଭେଦଭାବ ନ ଥିଲା, ଛୁଆଁ ଅଛୁଆଁର ପ୍ରଭେଦ ନ ଥିଲା । ସମସ୍ତଙ୍କ ହୃଦୟକୁ ସେଇ ଗୋଟିଏ ଆହ୍ୱାନ ଜାବୋଡ଼ି ଧରିଥିଲା । ସେହି ଆହ୍ୱାନ ଥିଲା ଭାରତ ମାତାର ଆହ୍ୱାନ । ଦେଶକୁ ଫିରିଙ୍ଗି କବଳରୁ ମୁକ୍ତ କରିବାର ଆହ୍ୱାନ ।

କୋରାପୁଟ ଗ୍ରେଟିଆ ପଲ୍ଲୀ ଗାଁରେ ଏ ସ୍ୱର ଯେ ଗୁଞ୍ଜିଉଠିଲା, ତା'ର ମୂକସାକ୍ଷୀରୂପେ ନିର୍ମାଣ ହୋଇଛି ଶହୀଦ୍ ସ୍ମୃତି ସ୍ତମ୍ଭ । ସେହି ଶହୀଦ୍ ସ୍ମୃତି ସ୍ତମ୍ଭ ନିକଟରେ ଠିଆହେବାବେଳେ ଇତିହାସ ମଧ୍ୟରୁ ସେମାନଙ୍କର ନିର୍ଭୀକ, ନିଷ୍ପାପ ତେଜୋଦୀପ୍ତ ମୁହଁଗୁଡ଼ିକ ଭାସି ଆସୁଥିଲା ।

ପାମ୍ପଡ଼ହାଣ୍ଡି ଉମରକୋଟ ରାସ୍ତାରେ ନିର୍ମାଣ କରାହୋଇଥିବା ଶହୀଦ୍ ସ୍ତମ୍ଭ ନିକଟରେ ଠିଆହୋଇ ସେମାନଙ୍କ ନାଁଗୁଡ଼ିକ ପଢ଼ିବାବେଳେ ଲାଗୁଥିଲା, ଏ ଜାତି କେତେ ମହାନ୍ । କେତେ ଲୋକ ଜୀବନ ଦେଇଛନ୍ତି ସ୍ୱାଧୀନତା ସଂଗ୍ରାମରେ ।

୧୯୮୧ ମସିହା ଜାନୁଆରୀ ୩୦ ତାରିଖ ଦିନ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ରାଧାକୃଷ୍ଣ ବିଶ୍ୱାସ ରାୟଙ୍କ ଦ୍ୱାରା ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇଥିବା ପାମ୍ପଡ଼ହାଣ୍ଡିର ଏହି ଶହୀଦ୍ ସ୍ତମ୍ଭ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ବିଶ୍ୱମ୍ଭରନାଥ ପାଣ୍ଡେଙ୍କ ଦ୍ୱାରା ୧୯୮୪ ମସିହା ମେ ମାସ ୨୩ ତାରିଖରେ ଉଦ୍‌ଘାଟିତ ହୋଇଥିଲା ।

୧୯୪୨ରୁ ୧୯୮୧ ଦୀର୍ଘ ୩୯ ବର୍ଷ ପରେ ପ୍ରାଣବଳି ଦେଇଥିବା ଶହୀଦ୍‌ଙ୍କର କଥା ଆମର ମନେ ପଡ଼ିଥିଲା ଓ ସେମାନଙ୍କର ସ୍ମୃତିକୁ ରୋମନ୍ଥନ କରି ଶହୀଦ୍ ସ୍ତମ୍ଭ ନିର୍ମାଣରେ ତିନିବର୍ଷରୁ ଅଧିକ ସମୟ ଲାଗିଥିଲା ।

ଏ ଜାତି ଯେ ଧନ୍ୟ ହୋଇଗଲା ସେହି ସ୍ତମ୍ଭ ନିର୍ମାଣ କରି । କାରଣ ତାହା ବିସ୍ମରଣ ହୋଇଯାଉଥିବା ଆଉ ଏକ ଅଧ୍ୟାୟକୁ ଆମର ଦୃଷ୍ଟି ଆକର୍ଷଣ କରିଥିଲା । ସେମାନଙ୍କର ନାଁଗୁଡ଼ିକୁ ପଢ଼ିଲାବେଳେ ଆଖିରେ ଲୁହ ଜକେଇଆସୁଥିଲା, ହୃଦୟର ସ୍ପନ୍ଦନ ଖୁବ୍ ଜୋର୍‌ରେ ଧକ୍‌ଧକ୍ ହେବାରେ ଲାଗୁଥିଲା ଏବଂ ଦେଶ ପାଇଁ ଜୀବନତ୍ୟାଗ କରିବାକୁ ମନ ବ୍ୟାକୁଳ ହୋଇଉଠୁଥିଲା ।

ଶହୀଦ୍ ବୀରମାନଙ୍କର ନାମ ଉଚ୍ଚାରଣ କରିବା ଯେପରି ଈଶ୍ୱରଙ୍କୁ ପ୍ରାର୍ଥନା କରିବା ସହିତ ସମାନ ବା ତା'ଠାରୁ ଅଧିକ ଅନୁଭବ ହେଉଥିଲା । କିଏ ଥିଲେ

ସେହି ଶହୀଦ୍‌ମାନେ ? ଯେଉଁମାନଙ୍କର ମୂଲ୍ୟବାନ୍ ଜୀବନ ଆମ ସ୍ୱାଧୀନତା ପାଇଁ ଏହି ଭୂମିରେ ରକ୍ତରଞ୍ଜିତ ହୋଇଉଠିଥିଲା ।

ମଣ୍ଡୀଗୁଡ଼ାର ଶ୍ରୀ ଭଗବାନ ପୂଜାରୀ, ଦଳେଇଗୁଡ଼ା ଗ୍ରାମର ଶ୍ରୀ ବିକ୍ରମ ଉତ୍ତରା, କଙ୍କରା ଗାଁର ସର୍ବଶ୍ରୀ ଖଗପତି ଅମନାତ୍ୟ ଓ ପରମାନନ୍ଦ ଶବର, ଦୁଖୁଗୁଡ଼ାର ଶ୍ରୀ ଆନନ୍ଦ ଗୌଡ଼, ଧଣ୍ଡାସ୍ୱର ଶ୍ରୀ ବଳି ଶୌରା, ରୁରୁଙ୍ଗି ଗ୍ରାମର ସର୍ବଶ୍ରୀ ରତନ ରନ୍ଧାରୀ, ବୁଦୁ ଅମାନାତ୍ୟ, ଡମୁରୀ ଗ୍ରାମର ଶ୍ରୀ ମଙ୍ଗୁରୁ ଉତ୍ତରା, ଶ୍ରୀ ଜଗନ୍ନାଥ ଅମନାତ୍ୟ—ପାତ୍ରପୁଟ, ଶ୍ରୀ ଶୁକୁ ମୁଦୁଲି—ମୁର୍ଲୀବାଇ, ଶ୍ରୀ ସହଦେବ ପୂଜାରୀ—ମୁର୍ଲୀବାଇ, ଶ୍ରୀ ସଦାଶିବ ରଣା—ମଞ୍ଚାଗାଁ, ଶ୍ରୀ ରାମଚନ୍ଦ୍ର ଅମାନତ୍ୟ—ଫୁପୁଗାଁ, ଶ୍ରୀ ରତନ ପୂଜାରୀ—ଡମ୍ବୁରୀପଦର, ଶ୍ରୀ ଘାସି ଜାନି—ନୂଆଗାଁ, ଶ୍ରୀ ଦୀନବନ୍ଧୁ ଜାନି—ନୂଆଗାଁ, ଶ୍ରୀ ସୁଦୁ ଉତ୍ତର—କଳାହାଣ୍ଡି ଓ ଶ୍ରୀ ଶ୍ୟାମସୁନ୍ଦର ଗୌଡ଼—ସରୁଗୁଡ଼ା । ବିଭିନ୍ନ ଗ୍ରାମମାନଙ୍କର ଏହି ୧୯ ଜଣ ପ୍ରାଣବଳି ଦେଇଥିବା ଯୋଦ୍ଧା, ଆମର ପ୍ରେରଣାର ଉତ୍ସ । ସ୍ୱାଧୀନତା ସଂଗ୍ରାମର ଇତିହାସ ହେଉଛି ସାଧାରଣ ଜନଗଣଙ୍କର ଇତିହାସ । ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ଦେଶପ୍ରେମର ଆହ୍ୱାନରେ ସେମାନଙ୍କର ପ୍ରାଣବଳି ସଂପ୍ରତି ଯୁବପୀଢ଼ି ପାଇଁ ଇତିହାସ ନ ହୋଇ କର୍ମପ୍ରେରଣାର ବଳିଷ୍ଠ ମାଧ୍ୟମ ହେବା ଉଚିତ । ସେମାନଙ୍କର ଜୀବନ ହିଁ ଏ ଜାତିର ପ୍ରବାହିତ ରକ୍ତରେ ଶକ୍ତି, ସାମର୍ଥ୍ୟ ଭରି ଦେଇପାରିବ ।

ପାମଡ଼ହାଣ୍ଡିର ସେହି ସ୍ମୃତି ସ୍ତମ୍ଭ ଶହୀଦ୍‌ମାନଙ୍କ ଜୀବନ ଗାଥାର ପୃଷ୍ଠା ଆମ ନିକଟରେ ଉନ୍ମୋଚିତ କରିଦେବାର ଏକ ମାଧ୍ୟମ ମାତ୍ର ।



# ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ତରଫରୁ ଗତ ଜୁଲାଇ ୧ ତାରିଖ ଠାରୁ ୨ ତାରିଖ ପର୍ଯ୍ୟନ୍ତ ଦୁଇ ଦିନଧରି 'ଲୋକ ସାହିତ୍ୟ ମାଧ୍ୟମରେ ସାକ୍ଷରତା ପ୍ରଚାର' ଶୀର୍ଷକ ଏକ ଲେଖକ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ବହୁ ପ୍ରବୀଣ ଓ ବିଶିଷ୍ଟ ଲେଖକ ଏହି କର୍ମଶାଳାରେ ଯୋଗଦେଇ ନିଜ ନିଜର ବକ୍ତବ୍ୟ ଉପସ୍ଥାପିତ କରିଥିଲେ । ଲୋକ ସାହିତ୍ୟ କହିଲେ ଲୋକଗୀତ, ଲୋକକଥା, ଢଗଢମାଳି, ପଦେଇ, ଲୋକନାଟକକୁ ବୁଝାଏ । ଯାହା ସାଧାରଣ ଲୋକମାନେ ବୁଝିପାରନ୍ତି ଓ ଆଦର କରନ୍ତି, ତାକୁ ଲୋକ ସାହିତ୍ୟ କୁହାଯାଏ ।

ଲୋକ ସାହିତ୍ୟର ସ୍ୱର ଏତେ ତୀବ୍ର ଯେ ଏହା ପ୍ରାୟତଃ ସମୁଦାୟ ଜନ-ଚେତନାକୁ ଆଚ୍ଛନ୍ନ କରି ରଖିଥାଏ । ସାଧାରଣ ଲୋକେ ଏହାକୁ ମନେରଖିଛନ୍ତି । ବିଶେଷକରି ଢଗଢମାଳି ଓ ପଦେଇର ବ୍ୟାପକତା ଦେଖିବାକୁ ମିଳେ । ଏପରି ଅନେକ ଲୋକକଥା ଓ ଲୋକଗୀତ ରହିଛି, ତାହା ଲୋକମାନେ ଜାଣନ୍ତି । କିନ୍ତୁ ଏହି ଲୋକକଥା ବା ଲୋକଗୀତକୁ କିପରି କାର୍ଯ୍ୟରେ ଲଗାଯାଇପାରେ ଯାହାଦ୍ୱାରା ସାକ୍ଷରତା କାର୍ଯ୍ୟକ୍ରମର ବିକାଶ ହେବ, ଏହାହିଁ ଥିଲା କର୍ମଶାଳାର ବିଷୟ । ଲେଖକ କର୍ମଶାଳାର ଉଦ୍ଦେଶ୍ୟ ପାଣ୍ଡୁଲିପି ପ୍ରକାଶ କରିବା । ଏହାର ଲକ୍ଷ୍ୟ ପରିବର୍ତ୍ତନ ନୁହେଁ । ସାକ୍ଷର କରିବା ପାଇଁ ଲୋକ ସାହିତ୍ୟକୁ ମାଧ୍ୟମ କରିବା । ଏହା ନିଶ୍ଚିତ ଭାବେ ଏକ ବଳିଷ୍ଠ ମାଧ୍ୟମ । କାରଣ ଜାଣିଥିବା ଯେକୌଣସି ବିଷୟ ମନରେ ଅଧିକ ଆଗ୍ରହ ସୃଷ୍ଟି କରିପାରେ । ଲୋକ ସାହିତ୍ୟର ବିଭିନ୍ନ ବିଭାଗ ଏତେ ସରଳ, ସହଜ ଓ ସାବଲୀଳ ଯେ ଏହା ସାଧାରଣ ଲୋକଙ୍କର ମନକୁ ସହଜରେ ଗ୍ରହଣୀୟ ହୋଇ, ହୃଦୟକୁ ସ୍ପର୍ଶ କରେ ।

ସାକ୍ଷରତା ଅଭିଯାନର ଲକ୍ଷ୍ୟ ହେଉଛି ହୃଦୟକୁ ସ୍ପର୍ଶ କରିବା । ଯଦି ନିରକ୍ଷର ବ୍ୟକ୍ତିର ହୃଦୟରେ ସାକ୍ଷର ହେବା ପାଇଁ ଇଚ୍ଛା ଜନ୍ମ ନ ହୁଏ, ତେବେ ସେ ଆଦୌ ସାକ୍ଷର ହେବାକୁ ଆସିବ ନାହିଁ । ହୃଦୟ ମଧ୍ୟରେ ଇଚ୍ଛା ଶକ୍ତିକୁ ଜାଗ୍ରତ କରିବା ପାଇଁ ଲୋକ ସାହିତ୍ୟର ପ୍ରୟୋଗ ନିଶ୍ଚିତ ଭାବେ ଏକ ସଫଳ ପ୍ରୟାସ ଓ ପ୍ରୟୋଗ । ଲେଖକ କର୍ମଶାଳାରେ ଏହି ବିଷୟ ଆଲୋଚିତ ହେଲା । ଲୋକ ସାହିତ୍ୟର କେଉଁ କେଉଁ କଥା ସାକ୍ଷର ମନକୁ ଛୁଇଁବ, ସେ ସଂପର୍କରେ ବିଶଦ ଆଲୋଚନା

ଦରକାର । ବର୍ତ୍ତିମାନ ପରିସ୍ଥିତି, ପରିବେଶକୁ ଲକ୍ଷ୍ୟ କରି ପଦ୍ଧତି ଠିକ୍ ହେବା ଉଚିତ । କାରଣ ସମାଜରେ ଘଟୁଥିବା ପରିବର୍ତ୍ତିନକୁ ଲକ୍ଷ୍ୟକରି ଲୋକ ସାହିତ୍ୟକୁ ଆଧାର କରି ପାଣ୍ଡୁଲିପି ପ୍ରସ୍ତୁତ ନ କଲେ, ଏହା ସାକ୍ଷରମାନଙ୍କ ମନରେ ପ୍ରଭାବ ପକାଇବ ନାହିଁ ଓ ସେମାନଙ୍କୁ ସାକ୍ଷରତା ପାଇଁ ସକ୍ରିୟ ଅଂଶ ଗ୍ରହଣରେ ପ୍ରବୃତ୍ତ କରିବ ନାହିଁ ।

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ଏହି ଦୁଇ ଦିନ ଯେଉଁ ଆଲୋଚନା ହେଲା, ତାହା ଏକ ରୂପରେଖ ପ୍ରସ୍ତୁତ କଲା । ରୂପରେଖକୁ କାର୍ଯ୍ୟରେ ଲଗାଇବା ପାଇଁ ପାଣ୍ଡୁଲିପି ପ୍ରସ୍ତୁତ ହେବ । ପାଣ୍ଡୁଲିପିକୁ ଗଣମାଧ୍ୟମ ଜରିଆରେ, ସାକ୍ଷର-ମାନଙ୍କ ନିକଟରେ ପହଞ୍ଚାଇ, ସେମାନଙ୍କ ହୃଦୟରେ ସାକ୍ଷରତା ପାଇଁ ଇଚ୍ଛା ଜାଗ୍ରତ କରିବାକୁ ହେବ ।

ଏହି କାର୍ଯ୍ୟ ବଡ଼ ଦୁରୁହ କାର୍ଯ୍ୟ । ଜନଶିକ୍ଷା ସାଧନ କେନ୍ଦ୍ର କର୍ତ୍ତୃପକ୍ଷଙ୍କର ଆନ୍ତରିକତା ଉପରେ ଏହା ନିର୍ଭର କରେ । କାଗଜ କଲମରେ କର୍ମଶାଳା କରିବା ଓ ମୂଳ ଲକ୍ଷ୍ୟ ହାସଲ ପାଇଁ ଆନ୍ତରିକତା ସହ ଲାଗିପଡ଼ିବା ଏଇ ଦୁଇଟି ଭିନ୍ନ କଥା । ଏଇ ଭିନ୍ନତା ହିଁ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ପ୍ରକୃତ ପରିଚୟ । ଏହାର ବର୍ତ୍ତିମାନର ନିର୍ଦ୍ଦେଶକ ଏହି ଦିଗଟି ପ୍ରତି ଦୃଷ୍ଟି ଦେବେ ବୋଲି ଆମେ ଆଶା କରୁ ।



# ଯୁକ୍ତ ଦୁଇ ପରୀକ୍ଷା ଫଳ

ଯୁକ୍ତ ଦୁଇ ବିଜ୍ଞାନ ପରୀକ୍ଷାଫଳ ପ୍ରକାଶିତ ହେବା ପରଠାରୁ ଖବରକାଗଜରେ ଏହି ଫଳାଫଳକୁ ନେଇ ସମ୍ବାଦ ପରିବେଷଣ ହେବାରେ ଲାଗିଛି । ରାଜ୍ୟ ବିଧାନ-ସଭାରେ ମାନ୍ୟବର ସଭ୍ୟମାନେ ଆଲୋଚନା କରିଛନ୍ତି ଓ ମନ୍ତ୍ରୀ ମହୋଦୟ ଅତ୍ୟନ୍ତ ଗଦ୍ ଗଦ୍ ହୋଇ କେବଳ ଗଣିତ ପତ୍ର ନୁହେଁ, ଆଉ ତିନି ଚାରିଗୋଟି ପରୀକ୍ଷା ପ୍ରଶ୍ନ ପତ୍ର ଲିକ୍ ହୋଇଥିଲା ବୋଲି ବିଧାନସଭା ଗୃହରେ ବିବୃତି ଦେଲେଣି । ହାଇକୋର୍ଟରେ ଏକ ଜନସ୍ୱାର୍ଥ ମାମଲାକୁ ବିଚାର କରି ମାନ୍ୟବର ନ୍ୟାୟାଧୀଶ ପ୍ରଥମ ୨୦ ଜଣଙ୍କର ପରୀକ୍ଷା ଫଳକୁ ବାତିଲ କରି ପୁନଃ ମୂଲ୍ୟାଙ୍କନ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଜଣେ ସାଧାରଣ ନାଗରିକ ଭାବେ ସ୍ୱତଃ ମନରେ ନାନାପ୍ରକାର ପ୍ରଶ୍ନ ଉଠୁଛି ଏବଂ ଆମେ କେତେ ସଚେତନତା ଅଭାବରେ ଦୋଷଦର୍ଶୀ ତାହା ବିଚାର କରିବାର ଆବଶ୍ୟକତା ରହିଛି ।

ଯୁକ୍ତ ଦୁଇ ପରୀକ୍ଷା ହେବା ସମୟରେ ପ୍ରଥମେ ଗଣିତ ପ୍ରଶ୍ନପତ୍ର ଲିକ୍ ହେଲା ବୋଲି କୁହାଗଲା ଏବଂ ଛାତ୍ରଛାତ୍ରୀମାନେ ପୁନର୍ବାର ପରୀକ୍ଷା ଦେଲେ । ସେତେବେଳେ କିପରି ପ୍ରଶ୍ନପତ୍ର ଲିକ୍ ହେଲା, ସେଥିପାଇଁ ଦାୟୀ କିଏ ? ଏହାର ତଦନ୍ତ କରାଯିବ ବୋଲି କୁହାଯାଇ ପରୀକ୍ଷା ନିୟନ୍ତ୍ରକଙ୍କୁ ନିଲମ୍ବିତ କରାଗଲା । ଅତିରିକ୍ତ ମୁଖ୍ୟ ସଚିବ ତଦନ୍ତ କରି ବର୍ତ୍ତମାନ ତାଙ୍କର ତଦନ୍ତ ରିପୋର୍ଟ ଦେଲେ ଏବଂ ତଦନ୍ତ ରିପୋର୍ଟରେ କେବଳ ଗଣିତ ନୁହେଁ, ଆହୁରି ତିନି, ଚାରୋଟି ବିଷୟରେ ପ୍ରଶ୍ନପତ୍ର ଲିକ୍ ହୋଇଥିଲା ବୋଲି ଦର୍ଶାଇଛନ୍ତି ଏବଂ ଏହା ବିଧାନସଭା ଗୃହରେ ମନ୍ତ୍ରୀ ମହୋଦୟ ସଗର୍ବରେ ଘୋଷଣା କରିଛନ୍ତି ।

ଚାରି ଚାରୋଟି ବିଷୟର ପ୍ରଶ୍ନପତ୍ର ଲିକ୍ ହେବା ଏବଂ ବିଧାନସଭା ଗୃହରେ ମନ୍ତ୍ରୀ ମହୋଦୟ ଏହା ପ୍ରକାଶ କରି ସରକାର କେତେ ବାହାଦୁରୀ କାର୍ଯ୍ୟକଲେ ତାହା ଦର୍ଶାଇବା, ଜନସାଧାରଣଙ୍କୁ ଭଣ୍ଡାଇବା ଓ ଧୋକାଦେବା ସହିତ ସମାନ । ଯେ ଦୋଷ କରିଛି, ସେ ଦଣ୍ଡ ଭୋଗୁ କିନ୍ତୁ ନିର୍ଦ୍ଦୋଷ ଛାତ୍ରଛାତ୍ରୀମାନେ ଦଣ୍ଡଭୋଗ କରିବେ କାହିଁକି ?

ଯୁକ୍ତ ଦୁଇ ବିଜ୍ଞାନ ଖାତା ମୂଲ୍ୟାଙ୍କନ ନେଇ ଯେଉଁ ଘୋର ସଂଶୟ ଓ ଉଦ୍‌ବେଗ ପ୍ରକାଶ ପାଉଛି, ସେଥିପାଇଁ କିଏ ଦାୟୀ ! ହାଇକୋର୍ଟ କେବଳ ପ୍ରଥମ କୋଡ଼ିଏ ଜଣଙ୍କର ଖାତା ମୂଲ୍ୟାଙ୍କନ କଥା କହିଛନ୍ତି, କିନ୍ତୁ ଅନ୍ୟ ସମୁଦାୟ ପରୀକ୍ଷାର୍ଥୀମାନଙ୍କର ଖାତା ପୁନଃ ମୂଲ୍ୟାଙ୍କନ ହେବାର ଆବଶ୍ୟକତା ରହିଛି କି ନାହିଁ ? ଯେଉଁ ଛାତ୍ର ୭୦ ନମ୍ବର ରଖିଥାନ୍ତା, ସେ ୩୦ ପାଇବାବେଳେ ଯେ ୫୦ ନମ୍ବର ରଖିଥାନ୍ତା, ସେ କୋଡ଼ିଏ ନମ୍ବର ପାଇଛି । କୋଡ଼ିଏ ନମ୍ବର ପାଇଥିବା ଛାତ୍ର ହୁଏତ କେବଳ ପ୍ରଥମ ବା ଦ୍ୱିତୀୟ ଶ୍ରେଣୀରେ ପାଶ୍ କରିଥାନ୍ତା । ମାତ୍ର ନମ୍ବର କମ୍ ହେବାରୁ, ସେ ଫେଲ୍ ହେଲା । ତା' ଖାତା ମୂଲ୍ୟାଙ୍କନ ହେବ କି ?

ଯୁକ୍ତ ଦୁଇ ପରୀକ୍ଷାରେ ଯେଉଁ ଘୋର ବିଭ୍ରାଟ ସୃଷ୍ଟି ହେଲା, ସେଥିରେ ପ୍ରଥମେ ପ୍ରଶ୍ନପତ୍ର ଲିକ୍ ଓ ଦ୍ୱିତୀୟରେ ଖାତା ମୂଲ୍ୟାଙ୍କନରେ ବ୍ୟାପକ ଅବହେଳା, କାଳିଆତି ଓ ଅଦୂରଦର୍ଶିତା ପାଇଁ ସାଧାରଣ ଛାତ୍ର ଯେଉଁମାନେ କେବଳ ପାଶ୍ କରିଥାନ୍ତେ, ସେମାନେ ପାଶ୍‌କରି ପାରିଲେ ନାହିଁ । ଏଥିପାଇଁ ସରକାର ଓ ମନ୍ତ୍ରୀ ମହୋଦୟଙ୍କର କ'ଣ କିଛି କର୍ତ୍ତବ୍ୟ ନାହିଁ ?

ବିଧାନସଭାରେ ମନ୍ତ୍ରୀ ମହୋଦୟ ପ୍ରଶ୍ନପତ୍ର ଲିକ୍ ହେବା କଥା କହିଲେ, ଲିକ୍ ଯୋଗୁ ପରୀକ୍ଷାର୍ଥୀମାନଙ୍କୁ ଯେଉଁ ଅସୁବିଧା ହେଲା ତା'ର ନିରାକରଣ କଥା କହିଲେ ନାହିଁ । ହାଇକୋର୍ଟ ପ୍ରଥମ କୋଡ଼ିଏ ଜଣଙ୍କ କଥା କହିଲେ, ଅନ୍ୟମାନଙ୍କ କଥା ବିଚାର ପରିସରକୁ ଆସିଛି କି ନାହିଁ ଜଣାପଡ଼ିଲା ନାହିଁ । ବିଚାର ଅଭିଭାବକ ? ଯୁକ୍ତ ଦୁଇ କାଉନସିଲ ଅଫିସକୁ ଯାଇ ଟଙ୍କା ଦେଇ ପରୀକ୍ଷାଖାତା ପୁନଃ ମୂଲ୍ୟାଙ୍କନ ପାଇଁ ଦରଖାସ୍ତ ଦେଲେ ତାହା କେତେ ଦିନ ଯିବ କିଏ ଜାଣେ ? ପରୀକ୍ଷାଖାତା ପୁନର୍ବାର ଦେଖିବାର ବ୍ୟବସ୍ଥା ନାହିଁ; କେବଳ ମାର୍କଗୁଡ଼ିକୁ ମିଶାଇବା ପର୍ଯ୍ୟନ୍ତ କାର୍ଯ୍ୟ ସମ୍ପାଦିତ ହୁଏ । ଏହା ଏକ ବିଚିତ୍ର ବ୍ୟବସ୍ଥା ।

ତରୁଣ ଯୁବକମାନଙ୍କର ଭବିଷ୍ୟତ ସହିତ ଲୁଚକାଳି ଖେଳିବା ଓ ଦୋଷୀ ଧରା ନ ପଡ଼ିବା, ଧରାପଡ଼ିଲେ ଦଣ୍ଡ ନଦେବା ଦ୍ୱାରା କ୍ରମଶଃ ଯୁକ୍ତ ଦୁଇ କାଉନସିଲର ପରୀକ୍ଷା ପରିଚାଳନା ନେଇ ସନ୍ଦେହ ଉପୁଜିଛି ଏବଂ ସରକାରଙ୍କ ଏହାକୁ ସୁଧାରିବା ପାଇଁ ଆନ୍ତରିକତାର ଅଭାବ ବେଶ୍ ଦୃଷ୍ଟିପଡ଼ୁଛି ।

ରେଭେନ୍‌ସା ମହାବିଦ୍ୟାଳୟ ପିଲାଙ୍କର ନମ୍ବର କମ୍ ଯୋଗୁ କିଛି ହଇଚଇ ହେଲା; ଅଥଚ ସମୁଦାୟ ପରୀକ୍ଷାର୍ଥୀମାନେ ଖାତା ଦେଖିବାର ଅବ୍ୟବସ୍ଥା ଓ ପ୍ରଶ୍ନପତ୍ର ଲିକ୍ ହେତୁ ନିଜ ନିଜର ମୂଲ୍ୟବାନ ବର୍ଷଟିଏ ନଷ୍ଟକଲେ ଏଥିପାଇଁ କ'ଣ ମୁଖ୍ୟମନ୍ତ୍ରୀ

ଓ ଶିକ୍ଷାମନ୍ତ୍ରୀ ଦାୟୀ ନୁହନ୍ତି ? ବ୍ୟୁରୋକ୍ରାଟିକ ତଦନ୍ତ ଦ୍ୱାରା ଦୋଷୀ କେବେ ଦଣ୍ଡ ପାଇଛନ୍ତି କି ? ଜଣେ ବ୍ୟକ୍ତିବିଶେଷଙ୍କୁ ନିଲମ୍ବିତ କରିବା ବା କିଛି ଦଣ୍ଡଦେବା ଦ୍ୱାରା ବ୍ୟବସ୍ଥାରେ କୌଣସି ପରିବର୍ତ୍ତନ ହେଉଛି କି ?

ପରୀକ୍ଷା ପରିଚାଳନା, ଖାତା ମୂଲ୍ୟାଙ୍କନରେ ଯେଉଁ ଅବ୍ୟବସ୍ଥା ହେଉଛି, ତାକୁ କେମିତି ସୁଧାରିପାରିବା, ସେଥିପାଇଁ ଆନ୍ତରିକତାର ସହ କାର୍ଯ୍ୟ କରିବାର ଆବଶ୍ୟକତା ରହିଛି ଏବଂ ସାଧାରଣ ଲୋକେ ସରକାରଙ୍କୁ ଏ ସମ୍ପର୍କରେ ସଚେତନ କରାଇବା ପାଇଁ ଜନମତରେ ଏହା ପ୍ରତିଫଳିତ ହେବା, ବୁଦ୍ଧିଜୀବୀ, ସାହିତ୍ୟିକ ନିଜ ନିଜର ନିର୍ଭୀକ ମତ ଦେବେ ବୋଲି ଆଶା ।



# ଅନ୍ତରଙ୍ଗ ଆଳାପ

'ପ୍ରଗତିବାଦୀ'ରେ ପ୍ରକାଶିତ ମୋର ଏହି ସ୍ତମ୍ଭ ବନ୍ଧ ସମସ୍ତରେ ଅନିୟମିତତା ଦୋଷରେ ଦୋଷୀ ବୋଲି ମୋର କେତେକ ବନ୍ଧୁ ମୋତେ କେତେଥର କହିଲେଣି । ମୁଁ ତାଙ୍କୁ ତା'ର ଉତ୍ତରରେ କହିଥାଏ ଯେ, ମନରେ ସିନା କିଛି ଭାବନା ଆସିଲେ ଲେଖିବି । ଖାଲି ଲେଖିବା ପାଇଁ ଲେଖିଲେ ତା'ର ମୂଲ୍ୟ କ'ଣ ? ଏହି ଭାବନାଗୁଡ଼ିକ କେମିତି ଆସେ ? ଅନୁଭବରୁ ଏହା କେବେ କେବେ ଜନ୍ମ ନେବାବେଳେ, ଆଉ କେବେ ଅଧ୍ୟୟନ, ଆଳାପ ଆଲୋଚନାରୁ ମିଳିଥାଏ । ବନ୍ଧୁ ସମସ୍ତରେ ଅନ୍ତରଙ୍ଗ ଆଳାପ ଅନେକ ଭାବନାକୁ ମୁଣ୍ଡରେ ଭର୍ତ୍ତି କରେ । ଓଡ଼ିଆ ଭାଷା ସାହିତ୍ୟରେ ଅନ୍ତରଙ୍ଗ ଆଳାପ ବହୁତ କମ୍ ।

ଦୁଇଜଣ ସାହିତ୍ୟିକ, ଲେଖକ, କବି ନିଜ ଭିତରେ କଥାହେବାବେଳେ ପରସ୍ପର କ'ଣ କଥା ହୁଅନ୍ତି ? ବୋଧହୁଏ ସାହିତ୍ୟ । ଅର୍ଥାତ୍ ସମାଜରେ ଯାହାକିଛି ଘଟୁଛି, ତାହା ଭାଷା ଓ ଶବ୍ଦ ମାଧ୍ୟମରେ କିପରି ପ୍ରକାଶ ପାଉଛି, ସେହି କଥା ନିଶ୍ଚିତ ଭାବେ ହେଉଥିବେ । କେତେବେଳେ ହୁଏତ ଟିକିଏ ନିବିଡ଼ ଭାବରେ ଅନ୍ତରଙ୍ଗର ସହିତ ଘରେ ଗୁ' ପିଇ ବା ମିଠା ଖାଇ । କିନ୍ତୁ ଓଡ଼ିଆ ସାହିତ୍ୟରେ ଏହି ଅନ୍ତରଙ୍ଗ ଆଳାପ ଆଦୌ ପ୍ରକାଶପାଉ ନାହିଁ । କେବେ ଅବା କେହି ଜ୍ଞାନପୀଠ, କେନ୍ଦ୍ର ସାହିତ୍ୟ ଏକାଡେମୀ, ଶାରଳା ବା ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ ସେହି ପ୍ରାପ୍ତକର୍ତ୍ତାଙ୍କର ସାକ୍ଷାତକାର ଖବରକାଗଜର ପୃଷ୍ଠା ମଣ୍ଡନ କରୁଛି । ଏହା ଅନ୍ତରଙ୍ଗ ଆଳାପ ବୋଲି କୁହାଯାଇପାରିବ ନାହିଁ ।

ଅବଶ୍ୟ ଆମେ ଓଡ଼ିଶାର ସାହିତ୍ୟିକ ବା ଲେଖକମାନେ ଏକ ଏକ କୂଅ ଭିତରେ ବନ୍ଦୀଜୀବନଟିଏ ବିତାଉଛୁ । କେତେକଙ୍କୁ ସରକାରୀ ଲେଖକ କୁହାଗଲା-ବେଳେ, ଅର୍ଥାତ୍ ଯେଉଁମାନେ ଗୃହକାର୍ଯ୍ୟକୁ ଜୀବିକା କରି ଜୀବନଚର୍ଯ୍ୟା କରୁଛନ୍ତି, ଅନ୍ୟ କେତେକ କେବଳ ପ୍ରଚ୍ଛରଧର୍ମୀ ଶସ୍ତା ସାହିତ୍ୟ ସୃଷ୍ଟି କରୁଛନ୍ତି । ଏଠି ଲେଖକ ଅନେକ ଭାଗରେ ବିଭକ୍ତ ହୋଇପଡ଼ିଛି । ଧରାଧରି କରି ଲେଖାଟିଏ ଇଣ୍ଡିଆନ୍ ଲିଟରେଚରରେ ପ୍ରକାଶ ପାଇଁ ହେଉ ବା ଖବରକାଗଜରେ ନିଜ ପୁସ୍ତକଟିର ଉଚ୍ଚ୍ୟ ନିମିତ୍ତ ଅଥବା କୌଣସି କମିଟିରେ ରହି ନିଜ ନାଁକୁ ବିମଣ୍ଡିତ କରିବା ପାଇଁ ।

ସତ କହିବାକୁ ଗଲେ ଆମେ ସମସ୍ତେ ଆଗପଛ ହୋଇ ଧରାଧରି କରିବା ପାଇଁ କେତେବେଳେ ଠେଲାପେଲା ବା ଧସ୍ତାଧସ୍ତି ଯେ ନ ହେଉଛୁ ତାହା ନୁହେଁ । ତେଣୁ

ଅନ୍ତରଙ୍ଗ ଆଳାପ କରିବାର ପ୍ରଶ୍ନ ଉଠୁଛି କେଉଁଠି ? ଆମେ ଜଣେ ଜଣେ ନିଜ ନିଜର ସମ୍ପ୍ରଦାୟମାନ ଗଢ଼ିବା ଯୋଗୁଁ ନିଜ ନିଜ ଭିତରେ ଯେଉଁ ସ୍ନେହ, ଶ୍ରଦ୍ଧା ଓ ଅନ୍ତରଙ୍ଗତା ରହିବା କଥା, ନ ରହିବା ଫଳରେ ଆମର ବାର୍ତ୍ତାଳାପ ନାହିଁ, ବିବୃତି ନାହିଁ । କେବଳ ସାକ୍ଷାତକାର ବା ଖବରକାଗଜରେ ସମ୍ବାଦ ଭିତରେ ଆମେ ଚୁପ୍‌ଚାପ୍ ମୁହଁ ଲୁଚାଇ ବସିବାକୁବେଶୀ ପସନ୍ଦ କରୁଛୁ ।

ଯଦି ଆମେ ସତରେ ଅନ୍ତରଙ୍ଗ ବାର୍ତ୍ତାଳାପ କରନ୍ତୁ, ତେବେ ଆମ ବାର୍ତ୍ତାଳାପ କେମିତି ହୁଅନ୍ତା ? ସାକ୍ଷାତକାର ପାଇଁ ସମୟ ନିର୍ଦ୍ଧାରଣ କରି, ନିର୍ଦ୍ଦିଷ୍ଟ କେତେକ ପ୍ରଶ୍ନ ପଚାରିବା ଅନ୍ତରଙ୍ଗ ବାର୍ତ୍ତାଳାପ ପର୍ଯ୍ୟାୟଭୁକ୍ତ ହେବ ନାହିଁ ।

ଥରେ ଜଣେ ବନ୍ଧୁଙ୍କ ସହିତ ଆଲୋଚନା କଲାବେଳେ ମୁଁ ତାଙ୍କୁ କୌଣସି ଏକ ଗଳ୍ପ ବିଷୟରେ ତା'ର ଲେଖକଙ୍କ ସମ୍ପର୍କରେ ପଚାରିଲି । ସେ କହିଲେ ସେହି ଲେଖକଙ୍କର ଲେଖାରେ କିଛି ସାରାଂଶ ନାହିଁ, ଅର୍ଥାତ୍ ଭଲ ନୁହେଁ । ଏକଥା ବନ୍ଧୁ ମୋତେ ତାଙ୍କର ଅନ୍ତରଙ୍ଗ ଆଳାପବେଳେ କହିଲେ ମଧ୍ୟ, ଏହା ସଭାରେ କହି ପାରୁ-ନାହାନ୍ତି ବା କହିପାରିବେ ନାହିଁ କିମ୍ବା ସାକ୍ଷାତକାରରେ ଲେଖି ବି ପାରିବେ ନାହିଁ । ମୁଁ ମଧ୍ୟ ତାଙ୍କର ଏହି ଅନ୍ତରଙ୍ଗ ଆଳାପକୁ ଅନ୍ୟ ପାଖରେ କହି ତାଙ୍କ ନାଁ ପ୍ରକାଶ କରିପାରିବି ନାହିଁ । ଯାହା ସତ୍ୟ ତାହା କହିବା ପାଇଁ ଆମର ଏତେ ଡର କାହିଁକି ? ଆମେ କାହାକୁ ଭୟ କରି ସତ୍ୟ କହିବାକୁ ପରାଙ୍ମୁଖ ?

ବୋଧହୁଏ ଏହାର ସରଳ ଉତ୍ତର ହେଉଛି 'ନିଜକୁ' । ଆମେ ଆମ ନିଜକୁ ଡରୁଛୁ ଅର୍ଥାତ୍ କାଲେ ଚାକିରିରେ ବଦଳି ହେବକି ? ପୁରସ୍କାର ମିଳିବ ନାହିଁକି ? ପ୍ରତିକାଟିରେ ଲେଖା ପ୍ରକାଶ ହେବନିକି ? ଟି. ଭି.ରେ ମୁହଁ ଦେଖାଇବାର ସୌଭାଗ୍ୟ ମିଳିବ ନାହିଁ କି ? ନିଜକୁ ଆମେ ଯେତେ ବଡ଼ ବୋଲି ଭାବି ହେଉଥିଲେ ମଧ୍ୟ ସତ୍ୟକୁ ଘୋଡ଼ାଇ ଆମେ ଆମ ରୂପଗୁଡ଼ିକୁ ଝଲସାଇ ଦେବାର ବିଫଳ ପ୍ରଚେଷ୍ଟା କରୁଛୁ ମାତ୍ର ।

ଲେଖକଟି ସତ୍ୟଦ୍ରଷ୍ଟା ହେବ ଏହା କେବଳ ଆମର ଅଭିଳାଷ । ଏହି ହେତୁ ଆମେ ଭାରତ ଆକାଶରେ ଗୋଟେ ଶ୍ରେଷ୍ଠ ଶ୍ରେଷ୍ଠ ତାରକାଙ୍କ ପରି ଦପ୍ ଦପ୍ ହେଉଛୁ ଏବଂ ଆମର ଅନ୍ତରଙ୍ଗ ଆଳାପ ପ୍ରବୃତ୍ତି ନାହିଁ ।

ଏମିତି ଅନେକ ଅନ୍ତରଙ୍ଗ ଆଳାପକୁ ଯୋଗାଇବାର ପରିକଳ୍ପନା କରିବାକୁ ଯଦି ଚେଷ୍ଟା କରାଯାଆନ୍ତା, ତେବେ ତାହା ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରନ୍ତା । ସେପ୍‌ଟେମ୍ବର/ଅକ୍‌ଟୋବର ଭାରତୀୟ ସାହିତ୍ୟ ସଂଖ୍ୟାରେ ଆସାମର ବିଶିଷ୍ଟ ସାହିତ୍ୟିକ ଶ୍ରୀ ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟଙ୍କ ସହିତ ଶ୍ରୀ ମୃତ୍ୟୁଞ୍ଜୟ ଶତପଥୀଙ୍କର ଏକ

ସାକ୍ଷାତକାର ପ୍ରକାଶ ପାଇଛି । ଏଥିରେ ଶ୍ରୀ ଭଟ୍ଟାଚାର୍ଯ୍ୟ କହିଛନ୍ତି ତାଙ୍କ ଭିତରେ ଯେଉଁ ବୈପ୍ଳବିକ ଚେତନା ପ୍ରକାଶ ପାଇଛି, ତାହା ତାଙ୍କର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ଯୋଗୁ ସମ୍ଭବ ହୋଇଛି । ସେ ଗରିବ, ଗରିବ ପରିବାରରେ ଜନ୍ମ ଓ ତାଙ୍କ ଅଞ୍ଚଳ ଏକ ପଛୁଆ ଅଞ୍ଚଳ । "ଚେଷ୍ଟା ମୋର ଚରିତ୍ର ବିପ୍ଳବ କରିବାକୁ କି ?" ଜଣେ ଶିଳ୍ପୀ ବିପ୍ଳବୀ ନୁହେଁ କି ? ଯାହା ଗତାନୁଗତିକ ପ୍ରବାହରେ ଚାଲିବ, ତା ବିରୋଧରେ ଶିଳ୍ପୀ ଚେତନା ବିଦ୍ରୋହ କରିବ ଏବଂ ନିଜ ସୃଷ୍ଟିରେ ନୂତନ ପୃଥିବୀ ନିର୍ମାଣ କରିବ । ଏହାପରେ ସ୍ୱଭାବେ ସେ ନୂତନ ମୂଲ୍ୟବୋଧ ତିଆରି କରିବ ।"

ଶ୍ରୀ ଭଟ୍ଟାଚାର୍ଯ୍ୟଙ୍କ ବକ୍ତବ୍ୟରେ ସତ୍ୟତା ରହିଛି ମାତ୍ର କେତେଜଣ ସାହିତ୍ୟିକ ତାଙ୍କ ଲେଖାରେ ଏହି ବିପ୍ଳବର ସ୍ୱରକୁ ଝଂକୃତ କରୁଛନ୍ତି ? ଶ୍ରୀ ଭଟ୍ଟାଚାର୍ଯ୍ୟଙ୍କର ଏହି ସାକ୍ଷାତକାରକୁ ହୁଏତ ଏକ ଉଚ୍ଚକୋଟୀର ସାକ୍ଷାତକାର ପର୍ଯ୍ୟାୟଭୁକ୍ତ କରାଯାଇ ନ ପାରେ ; କିନ୍ତୁ ସେ ଯେଉଁ ଗୋଟିଏ ବକ୍ତବ୍ୟ ରଖିଲେ, ତାହା ପ୍ରତ୍ୟେକ ଶିଳ୍ପୀମାନଙ୍କ ପାଇଁ ପ୍ରଯୁଜ୍ୟ ନୁହେଁ କି ? ଏ ଦୃଷ୍ଟିରୁ ଆମେ ଆମ ସାହିତ୍ୟକୁ ବିଚାର କରିବା କି ?



# ଗାନ୍ଧୀ ପରିକ୍ରମା

'ଗାନ୍ଧୀ ପରିକ୍ରମା' ଶୀର୍ଷକ ଏକ ସଂକଳନ ସର୍ବଶ୍ରୀ ମନମୋହନ ଚୌଧୁରୀ, ଡଃ ସୂର୍ଯ୍ୟକାନ୍ତ ଦାସ, ଅନ୍ନପୂର୍ଣ୍ଣା ମହାରଣା ଓ ଶୋଭାକର ସ୍ୱାଇଁଙ୍କ ଦ୍ୱାରା ସଂପାଦିତ ହୋଇ ଗାନ୍ଧୀ-କସ୍ତୁରବା ଗୋପବନ୍ଧୁ ବିନୋବା ଜୟନ୍ତୀ ସମିତି, କଟକ ଦ୍ୱାରା ପ୍ରକାଶିତ ହୋଇଛି । ଏହା ସମୟକ୍ରମେ ଓଡ଼ିଶାର ବୁଦ୍ଧିଜୀବୀ ପାଠକ ମହଲରେ ଆଦୃତ ଓ ଆଲୋଚିତ ହେବ । ଏ ପ୍ରକାର ଏକ ସଂକଳନ ପ୍ରକାଶ କରିବା ନିତାନ୍ତ ପ୍ରଶଂସନୀୟ; କାରଣ ଗାନ୍ଧୀ ଦର୍ଶନର ଆବଶ୍ୟକତା ସଂପର୍କରେ ବର୍ତ୍ତମାନ କେବଳ ଭାରତ ନୁହେଁ, ଅନ୍ୟାନ୍ୟ ଦେଶମାନଙ୍କରେ ମଧ୍ୟ ଆଲୋଚନା ହେଉଛି ।

କୌଣସି ଦର୍ଶନର ଉପଯୋଗିତା ସଂପର୍କରେ ବାରମ୍ବାର ଆଲୋଚନା କରିବା ଏବଂ ତାକୁ କାର୍ଯ୍ୟରେ ଲଗାଇବା ଏ ଦୁଇଟି ଭିନ୍ନ ଦିଗ । ସ୍ୱାଧୀନତା ପରଠାରୁ ଏ ପର୍ଯ୍ୟନ୍ତ ଗାନ୍ଧୀଙ୍କର ବିଚାରଧାରା ଉପରେ ବହୁ ବହି ଲେଖାଯାଇଛି ଓ ବହୁ ଆଲୋଚନା ମଧ୍ୟ ହେଉଛି । ଯେଉଁମାନେ ନିଜକୁ ଗାନ୍ଧୀବାଦୀ ବୋଲି କହୁଛନ୍ତି, ସେମାନେ କେତେ ଦୂର ଗାନ୍ଧୀଙ୍କର ବିଚାରକୁ ନିଜ ଜୀବନରେ ପ୍ରୟୋଗ କରୁଛନ୍ତି, ତାହା ମଧ୍ୟ ଲୋକମାନେ ଅନୁଧ୍ୟାନ କରୁଛନ୍ତି । ଗାନ୍ଧୀ ନିଶ୍ଚିତ ଭାବେ ଭାରତର ଜନଜୀବନ ଭିତରେ ରହିଛନ୍ତି, ଏକଥାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଏ ଦୃଷ୍ଟିରୁ ଓଡ଼ିଆ ଭାଷାରେ ଏ ପ୍ରକାର ଏକ ସଂକଳନ ସ୍ୱାଗତଯୋଗ୍ୟ ।

ମନମୋହନ ଚୌଧୁରୀ ଗାନ୍ଧୀବାଦୀ ନେତା । ତାଙ୍କ ଦ୍ୱାରା 'ଗାନ୍ଧୀର ମାପ' ଶୀର୍ଷକ ପ୍ରବନ୍ଧରେ ସେ ଲେଖିଛନ୍ତି, "ଗାନ୍ଧୀ ଗୋଟିଏ ଏପରି ବିଚିତ୍ର ବସ୍ତୁ ଯାହାକୁ ସହଜରେ ଧରି ହେଉନାହିଁ କି ଛାଡ଼ି ହେଉନାହିଁ ।" ଶ୍ରୀ ଚୌଧୁରୀଙ୍କ ମତରେ ଗାନ୍ଧୀ ପୁରୁଣା ଶବ୍ଦକୁ ନେଇ ସେଥିରେ ନୂଆ ଅର୍ଥଭରି ତାର ସଂପ୍ରସାରଣ କରୁଥିଲେ । ଯେପରିକି ଗାନ୍ଧୀ ବ୍ୟବହାର କରୁଥିବା ବିଭିନ୍ନ ଶବ୍ଦ ଅହିଂସା, ଅପରିଗ୍ରହ, ଟ୍ରଷ୍ଟିଶିପ, ରାଷ୍ଟ୍ରୀୟତା, ଧାର୍ମିକତା ଆଦି ଶବ୍ଦର ଯେଉଁ ନୂଆ ନୂଆ ପରିମିତି ଆବିଷ୍କାର କଲେ ସେ ସବୁ ଶବ୍ଦରେ ସେ ନୂଆ ଅର୍ଥ ଭର୍ତ୍ତି କରି ତାକୁ ବ୍ୟବହାର କଲେ । ସେହି ସବୁ ଅର୍ଥକୁ ବୁଝିବା ଦରକାର ।

ଶ୍ରୀ ଚୌଧୁରୀ ଗାନ୍ଧୀ ବିଚାରକୁ ମାପ କରିବାକୁ ଯାଇ ପ୍ରତ୍ୟେକ ବ୍ୟକ୍ତି ଗାନ୍ଧୀଙ୍କୁ ବୁଝିବା ପାଇଁ ନିଜକୁ ଗଢ଼ିବା କହିବା ବେଳେ ଶ୍ରୀ ପ୍ରଦ୍ୟୁମ୍ନ ବଳଙ୍କର ଶୀର୍ଷକ ଲେଖା "ଆଜିର ଭାରତରେ ଗାନ୍ଧୀ କିଏ ?" ଏ ପ୍ରଶ୍ନ ଉଠାଇଛନ୍ତି ।

'ଜର୍ଣ୍ଣାଲିଜମ୍' ପାଠ୍ୟକ୍ରମରେ ଯୋଗଦେବାକୁ ଆସିଥିବା ଛାତ୍ରଛାତ୍ରୀମାନେ ସାକ୍ଷାତକାର ବେଳେ 'ଗାନ୍ଧୀ କିଏ ?' ଏହି ଛୋଟିଆ ପ୍ରଶ୍ନଟିର ଉତ୍ତର ପ୍ରାୟ କେହି ଦେଇପାରିଲେ ନାହିଁ ଏବଂ ଆଜିର ବିଶ୍ୱବିଦ୍ୟାଳୟରୁ ଶିକ୍ଷାପ୍ରାପ୍ତ ଯୁବକ ଯୁବତୀମାନେ ଗାନ୍ଧୀଙ୍କୁ କାହିଁକି ଜାଣିବେ ବୋଲି ପ୍ରଶ୍ନ କରିଛନ୍ତି ।

ଶ୍ରୀ ବଳି ଛୋଭର ମତ୍ରତ କହିଛନ୍ତି ଯେ ଗାନ୍ଧୀଙ୍କୁ ମହାତ୍ମା ସ୍ତରକୁ ଠେଲି ଦେଇ, ତାଙ୍କୁ ଅସାଧାରଣ କରିଦେଇ ଆମେ ସାଧାରଣ ସ୍ତରରେ ରହିଯାଇ ଭୁଲିଗଲୁ । ବର୍ତ୍ତମାନର ଯୁବକ ଯୁବତୀମାନଙ୍କ ପାଇଁ 'ଗାନ୍ଧୀ' ଶବ୍ଦ ଏକରକମ୍ ଅଜଣା ଓ ଅଲୋଡ଼ା । ତେଣୁ ସେ ପରିଚମାପ୍ତି କରି କହିଛନ୍ତି, "ଗାନ୍ଧୀ ଆଜି ସମସ୍ତଙ୍କ ପାଇଁ ଅପ୍ରାସଙ୍ଗିକ, ଅଲୋଡ଼ା ।"

ଯଦି ଶ୍ରୀ ବଳିଙ୍କର ଉପସଂହାରକୁ ଠିକ୍ ବୋଲି ଗ୍ରହଣ କରିବା, ତେବେ ଗାନ୍ଧୀ ନିଜେ କହିଛନ୍ତି, "ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ଅବିରାମ ଉଦ୍ୟମରେ ହିଁ ଗୌରବ ରହିଛି, ପହଞ୍ଚିବାରେ ଗୌରବ ନାହିଁ ।"

ତେଣୁ ଗାନ୍ଧୀଙ୍କୁ ଜାଣିବା ପାଇଁ ତାଙ୍କ ଦର୍ଶନକୁ, ବିଶ୍ୱାସକୁ, ଜୀବନକୁ ଖିନ୍‌ଭିନ୍ କରି ଦେଖିବାର ଉଦ୍ୟମ ଗାନ୍ଧୀ ପରିକ୍ରମାରେ ଯେପରି କରାଯାଇଛି, ତାହା ଆଜିର ଆବଶ୍ୟକତା ଓ ପ୍ରାସଙ୍ଗିକତା ରଖେ ।

ଗାନ୍ଧୀ ପରିକ୍ରମାରେ ବହୁଗୁଡ଼ିଏ ଚିନ୍ତାଦୀପ୍ତ ପ୍ରବନ୍ଧ ସନ୍ନିବେଶିତ ହୋଇଛି । ନୂଆ ଢଙ୍ଗରେ ଉପସ୍ଥାପିତ ଏହି ପ୍ରବନ୍ଧଗୁଡ଼ିକ ଆମକୁ ଗାନ୍ଧୀଙ୍କ ସଂପର୍କରେ ଅଧିକ ଜାଣିବାରେ ସାହାଯ୍ୟ ଓ ଉତ୍ସାହ ପ୍ରଦାନ କରୁଛି । ଗାନ୍ଧୀଙ୍କର ଭାରତୀୟ ରାଜନୈତିକ ରଙ୍ଗପଟ୍ଟରେ ଆବିର୍ଭାବ, ଭାରତୀୟ ଭାଷା ସାହିତ୍ୟରେ ଯେଉଁ ଉଦ୍‌ବେଳନ ସୃଷ୍ଟି କରିଥିଲା, ଯେଉଁ ନୂତନ ସମ୍ଭାର ଆଣିଦେଇଥିଲା, ତାହା ଭାରତର ପ୍ରତ୍ୟେକ ଭାଷା ସାହିତ୍ୟକୁ ଉଜ୍ଜୀବିତ କରିଥିଲା । ସେହି ସମୟର କୌଣସି ଲେଖକ, କବି, ପ୍ରାବନ୍ଧିକ, ଔପନ୍ୟାସିକ କେହି ତାଙ୍କ ପ୍ରଭାବରୁ ମୁକ୍ତ ହୋଇ ପାରିନଥିଲେ । ଏବେ ମଧ୍ୟ ନୂତନ ପରୀକ୍ଷା ନିରୀକ୍ଷା ମଧ୍ୟରେ ସ୍ୱକୀୟ ସ୍ଥାନ ମଣ୍ଡନ ନ କରୁଛି ଏକଥା କୁହାଯାଇନପାରେ ।

ଗାନ୍ଧୀ ରାଜନୈତିକ ଦୃଶ୍ୟପଟ୍ଟରେ ଯେତିକି ଆବଶ୍ୟକ, ଭାଷା ସାହିତ୍ୟରେ ତତୋଧିକ ।

# ଶାରଳା ପୁରସ୍କାର

ଗତ କିଛିଦିନଧରି 'ପ୍ରଗତିବାଦୀ' ପୃଷ୍ଠାରେ "ମୋ ଭାଷା ମୋ ସାହିତ୍ୟ" ଶୀର୍ଷକରେ ଲେଖିବା ମୋର ବନ୍ଦ ହୋଇ ଯାଇଥିଲା । ପ୍ରଗତିବାଦୀର ସଂପାଦକ ଓ ଅନ୍ୟବଂଧୁମାନେ ମୋତେ ଯେପରି ଆଦର ସହିତ ତାଙ୍କ କାଗଜରେ ମଣ୍ଡନ କରିଥିଲେ, ମୁଁ ବେଶୀ ଦିନ ଚୁପ୍‌ଚାପ୍ ରହିପାରିଲି ନାହିଁ । 'ବେଦାନ୍ତର ସ୍ୱର' ଶୀର୍ଷକରେ ଲେଖୁଥିବା ଲେଖା ବହି ଆକାରରେ ପାଠକମାନଙ୍କ ନିକଟରେ ପହଂଚି-ଗଲାଣି । ନିତି କେତେକଥା ଘଟୁଛି । ସାହିତ୍ୟ, ରାଜନୀତି, ଅର୍ଥନୀତି, ସମାଜ, ରାଜ୍ୟ, ଦେଶ, ବିଶ୍ୱ ଇତ୍ୟାଦି କ୍ରମଶଃ ଅଧିକରୁ ଅଧିକ ପରିବର୍ତ୍ତନ ଭିତରେ ପ୍ରବେଶ କରୁଛନ୍ତି । ଅନେକ ପରିବର୍ତ୍ତନ ଘଟିବାରେ ଲାଗିଛି । ସାହିତ୍ୟରେ ମଧ୍ୟ ପରିବର୍ତ୍ତନକୁ ପରୀକ୍ଷା ନିରୀକ୍ଷା କୁହାଯାଉଛି । ସାହିତ୍ୟ ପୁରସ୍କାର ମଧ୍ୟ ବଢୁଛି । ଶାରଳା ପୁରସ୍କାର ରାଜ୍ୟର ଏକ ଅଧିକ ଅର୍ଥର ପୁରସ୍କାର ବୋଲି ଗ୍ରହଣ କରାଯାଇଛି । ଏହାକୁ କିନ୍ତୁ ସମ୍ମାନ୍ତ ପୁରସ୍କାରର ମାନ୍ୟତା ଦିଆଯାଇପାରିନାହିଁ । ଭବିଷ୍ୟତରେ ମଧ୍ୟ ଏହାକୁ ସମ୍ମାନ୍ତ ପୁରସ୍କାର କୁହାଯିବାନେଇ ସନ୍ଦେହ ଦେଖାଦେଇଛି । ଏହାର ମୂଳକାରଣ କ'ଣ ଏହାକୁ ବିଚାର କରାଯିବା ଦରକାର । ଶାରଳା ପୁରସ୍କାର ଆରମ୍ଭ ହେବା ଦିନଠାରୁ ଏଯାବତ୍ ଶ୍ରୀ ଶରତ କୁମାର ମହାନ୍ତିଙ୍କ ପରେ ଶ୍ରୀ ରାଜେନ୍ଦ୍ର କିଶୋର ପଣ୍ଡା ଏହାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । କେଉଁ କେଉଁ ବର୍ଷ ଦୁଇ ଦୁଇ ଜଣ ଏହାକୁ ବାଣ୍ଟିକୁଣ୍ଟି ନେଇଛନ୍ତି ବା ଦିଆଯାଇଛି । କେଉଁ କେଉଁ ବର୍ଷର ଲେଖକ ଯୋଗ୍ୟତା ମାପକାଠିରେ ମଧ୍ୟ ଛିଧେଇ ନାହାନ୍ତି, କିନ୍ତୁ ସେମାନଙ୍କୁ ପୁରସ୍କୃତ କରାଯାଇଛି ।

ଯେତେବେଳେ ଯେଉଁ ପୁରସ୍କାର ଦିଆଯାଉ ନା କାହିଁକି ଧରାଧରି, ଲବି ଇତ୍ୟାଦି ରହିଛି । ଜ୍ଞାନପୀଠଠାରୁ ଆରମ୍ଭକରି ଓଡ଼ିଶା ସାହିତ୍ୟ ଏକାଡେମୀର ବା 'ସଂସ୍କୃତି' ପୁରସ୍କାର ଏହି ଧରାଧରି ଦୋଷରୁ ମୁକ୍ତ ନୁହେଁ । ଯେଉଁ ସାହିତ୍ୟିକ ଧରିପାରି ପୁରସ୍କାର ପାଉଛି, ତାକୁ ଦୋଷଦେବାରେ କୌଣସି ଯୁକ୍ତି ନାହିଁ । ପ୍ରତ୍ୟେକ ମଣିଷ ପ୍ରବୃତ୍ତିଗତ ଭାବେ ନାମ ଯଶ ଅର୍ଥ କ୍ଷମତା ପାଇବା ପାଇଁ ଇଚ୍ଛୁକ ଏବଂ ଏହି ଇଚ୍ଛା ତାକୁ ଧରାଧରି କରିବା ପାଇଁ ପ୍ରବର୍ତ୍ତାଉଛି । ଯଦି ମଣିଷର ପ୍ରବୃତ୍ତି ନାମଯଶ ପାଇଁ ନଥାନ୍ତା, ତେବେ ସେ ଆଦୌ ଧରାଧରି କରନ୍ତା ନାହିଁ । କିନ୍ତୁ ଅସଲ କଥାଟି

ଧରାଧରିରେ ନାହିଁ । ଯେଉଁମାନେ ପୁରସ୍କାର କମିଟିରେ ରହୁଛନ୍ତି, ସେମାନେ ଧରା କାହିଁକି ପଡ଼ୁଛନ୍ତି, ଏହା ହିଁ ଚିନ୍ତାର ବିଷୟ ହୋଇ ପଡ଼ୁଛି । ଯଦି ବିଚାରକ ମଣ୍ଡଳୀ ନିରପେକ୍ଷ ହୁଅନ୍ତେ, ତେବେ ସଠିକ୍‌ଭାବେ ପୁରସ୍କାର ଦିଆଯାଇ ପାରନ୍ତା । ଏହା ହେଉଥିବା ପରି ଲକ୍ଷ୍ୟ କରାଯାଉନାହିଁ । ଯେଉଁ ବରିଷ୍ଠ ଓ ବିଶିଷ୍ଟ ସାହିତ୍ୟିକ-ମାନେ ଏହି ବିଚାରକ ମଣ୍ଡଳୀରେ ବସୁଛନ୍ତି, ସେମାନେ ଆଉ କ'ଣ ପାଇବାର ଆଶା ରଖୁଛନ୍ତି ଯେ ସେମାନଙ୍କର ବିଚାର ବିଭ୍ରାନ୍ତ ହେଉଛି ଏବଂ ସେମାନେ ଧରାପଡ଼ି ଯାଉଛନ୍ତି ? ଏ ପ୍ରଶ୍ନଟି ସେମାନେ ନିଜକୁ ପଚାରିବା ଉଚିତ ।

ବହୁ ସମୟରେ ଦେଖାଯାଉଛି ଜଣେ ତରୁଣ ସାହିତ୍ୟିକ ଜଣେ ବୟସ୍କ, ବରିଷ୍ଠ ଓ ବିଶିଷ୍ଟ ସାହିତ୍ୟିକଙ୍କ ପୂର୍ବରୁ ପୁରସ୍କାର ଲାଭ କରୁଛି । ଏହାଦ୍ୱାରା ଧରାଧରି ହୋଇଛି ବୋଲି ଗୁଞ୍ଜରଣ ସୃଷ୍ଟିହେବା ମାତ୍ରେ କେବେ କେବେ ସଫେଇ ଦେଇ କହୁଛନ୍ତି ଯେ ତରୁଣ ସ୍ରଷ୍ଟାଙ୍କର ବହିଟି ଶେଷ ପର୍ଯ୍ୟାୟକୁ ଉନ୍ନୀତ ହୋଇଥିଲା, ଅନ୍ୟ କାହାର ଭଲ ବହି ନ ଥିଲା । ଏପ୍ରକାର ଯୁକ୍ତିର କୌଣସି ମୂଲ୍ୟ ନାହିଁ । ବିଚାରକ ମଣ୍ଡଳୀ ପୁଣି ମୂଲ୍ୟାଙ୍କନ ପାଇଁ ବହି ମଗାଇ ପାରିବେ ବା ନିଜ ଭିତରେ ଆଲୋଚନା କରିଦେଇ ପାରିବେ । ବିଚାରପଦ୍ଧତିରେ ପରିବର୍ତ୍ତନ ହେବାଉଚିତ । ଯେ କୌଣସି ପଦ୍ଧତି ପ୍ରୟୋଗ କଲେ ମଧ୍ୟ ଧରାଧରି ଯେ ନହେବ, ଏହା କୁହାଯାଇ ପାରିବ ନାହିଁ । ତଥାପି ବିଚାରପଦ୍ଧତି ଓ ବିଚାରକମଣ୍ଡଳୀ ଯଦି ପରିବର୍ତ୍ତନ ହୁଅନ୍ତି, ତେବେ କେତେକାଂଶରେ ନିରପେକ୍ଷ ବିଚାର ଦେଖାଦେବ ।

ଶାରଳା ପୁରସ୍କାରର ବିଚାରକ ମଣ୍ଡଳୀରେ ପ୍ରତ୍ୟେକ ବର୍ଷ ପରିବର୍ତ୍ତନ ହେବା ଦରକାର । ଯଦି ଶାରଳା ପୁରସ୍କାର କମିଟି ଏହାକୁ ଏକ ସମ୍ଭ୍ରାନ୍ତ ଓ ମର୍ଯ୍ୟାଦା-ସମ୍ପନ୍ନ ପୁରସ୍କାର ଭାବରେ ଦେଖିବାକୁ ଚାହାନ୍ତି, ତେବେ ବିଚାରକ ମଣ୍ଡଳୀର ପ୍ରତ୍ୟେକ ବର୍ଷ ପରିବର୍ତ୍ତନ ଏହାକୁ ଏକ ନୂତନ ଦିଗ ନିର୍ଦ୍ଦେଶ କରିବ । ଯଦି କମିଟି ଭାବୁଥାନ୍ତି ଏହି ପୁରସ୍କାର ଦ୍ୱାରା କିଛି ସାହିତ୍ୟିକ ବ୍ୟକ୍ତିବିଶେଷଙ୍କୁ କୃପା ପ୍ରଦାନ କରାଯାଉଛି ତେବେ ଏହା ପୁରସ୍କାର ହୋଇପାରେ ମାତ୍ର ମର୍ଯ୍ୟାଦାସମ୍ପନ୍ନ ହେବ ନାହିଁ ଏବଂ ସମୟ ଆସିବ ବିଭିନ୍ନ ବର୍ଷରେ ଆତ୍ମାଭିମାନୀ ଲେଖକ ଦ୍ୱାରା ଏହା ପ୍ରତ୍ୟାଖ୍ୟାତ ହେବ ।



# ଏକ ନୂତନ ଦୃଷ୍ଟିକୋଣ

ଆଜିକାଲି ଏତେ ସଭାସମିତି ଯେ ମନ ଭାରି ବ୍ୟସ୍ତ ହୁଏ, ଅଛନ୍ଦପାଛନ୍ଦ ହୋଇଯାଏ କେଉଁଠି ଯୋଗ ଦେବ ବା କେଉଁଠି ଯୋଗ ନ ଦେବ । ରାଜନୀତି ସହିତ ତାଳ ଦେଇ ସାହିତ୍ୟ ସଭା, ପ୍ରାୟତଃ ସମାନ୍ତରାଳ ଗତିରେ ଚାଲିବାରେ ଲାଗିଛନ୍ତି । ସାହିତ୍ୟ ପାଇଁ ଏହା ସେତେ ଶୁଭସୂଚକ ନୁହେଁ । ତଥାପି ପଣ୍ଡିତ, ବୁଦ୍ଧିଜୀବୀ ସ୍ରଷ୍ଟାମାନେ ନିଜ ନିଜକୁ ପୁସ୍ତକ ଓ ପତ୍ରପତ୍ରିକା ମାଧ୍ୟମରେ ପ୍ରକାଶ କରିବା ସହିତ ଟି. ଭି. ଓ ଖବରକାଗଜରେ ବହୁଳ ପ୍ରଚାରିତ ବା ପ୍ରସାରିତ ହେବା ପାଇଁ ତତ୍ପର । ପ୍ରଚାରିତ ବା ପ୍ରସାରିତ ନ ହେଲେ ଲୋକେ ଜାଣିବେ କେମିତି ? ପୁରସ୍କାର ଓ ପ୍ରଶଂସା ମିଳିବାର ସମ୍ଭାବନା ମଧ୍ୟ କମିଯିବ । ସେଥିପାଇଁ ପ୍ରତିଯୋଗିତା, ସଭାସମିତି କରି ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ରାଜ୍ୟପାଳ ବା ସାହିତ୍ୟ ଏକାଡେମୀର ପଦାଧିକାରୀମାନଙ୍କୁ ଡାକି ପାରିଲେ, ସାହିତ୍ୟିକର ସଫଳତା ମିଳିପାରିବ ବୋଲି ସେମାନେ ଭାବୁଛନ୍ତି ବା ବିଚାର କରୁଛନ୍ତି । ତେଣୁ ବହୁ ସଭା, ବୈଠକ ସେହି ଚର୍ବିତଚର୍ବଣ, ଗତାନୁଗତିକ ।

ତେଣୁ କୌଣସି ବୈଠକକୁ ଯାଇବାକୁ ହେଲେ, ଏହା ସ୍ୱତଃ ମନରେ ଏକ ପ୍ରଶ୍ନ । ହଠାତ୍ 'ସୁଚରିତା' ତରଫରୁ ନିମନ୍ତ୍ରଣ ପତ୍ର ମିଳିଲା ତାଙ୍କର ସ୍ୱନକ୍ଷତ୍ରରେ ଯୋଗ ଦେବାକୁ । ପୁନର୍ବାର ସେହି ପୌନପୌନିକତାର ପ୍ରୟାସ । ଯିବା ନ ଯିବା ଅବସ୍ଥାରେ ଥିବାବେଳେ ସୁଚରିତାର ସୁଯୋଗ୍ୟ ପରିଚାଳକ ହରିବାବୁ ଟେଲିଫୋନ୍ କରି କହିଲେ, "ନିମନ୍ତ୍ରଣ ପତ୍ର ପାଇଥିବେ । ନିଶ୍ଚୟ ଆସିବେ । ଆମେ ଅନ୍ନପୂର୍ଣ୍ଣା ମହାରଣାଙ୍କୁ ଅତିଥି ଭାବେ ଡାକିଛୁ ।"

ଅନ୍ନପୂର୍ଣ୍ଣା ମହାରଣା (ଚୂନୀ ଅପା) ନାମଟି କହିବା ମାତ୍ରେ ଦେହ ଶୀତେଇ ଉଠିଥିଲା । ଓଡ଼ିଶାର ବରେଣ୍ୟ ସ୍ୱାଧୀନତା ସଂଗ୍ରାମୀ ଓ ସର୍ବୋଦୟ ଆନ୍ଦୋଳନର ନେତ୍ରୀ । ବିନୋବାଜୀଙ୍କ ଗୀତାର ଅନୁବାଦ ଅତ୍ୟନ୍ତ ଚମତ୍କାର ଭାବରେ କରିଛନ୍ତି । ଯିବା ନ ଯିବା ଅବସ୍ଥାରେ ଦୋଳାୟମାନ ହେଉଥିବା ମନ ସ୍ଥିରକଲି, ସଭାକୁ ନିଶ୍ଚିତ ଯିବି ଓ ଶୁଣିବି ।

ସଭା ଆରମ୍ଭରେ ପରସ୍ପର, ପରସ୍ପର ପ୍ରତି ପ୍ରୀତି ସମ୍ଭାଷଣ । ପତ୍ରିକା ସମ୍ପାଦକ ମାନଙ୍କର ଲେଖକ ଓ କବିମାନଙ୍କୁ ପୂଜା (ଦଶହରା ବିଶେଷାଙ୍କ) ପାଇଁ ଗଳ୍ପ ଓ

କବିତା ଦେବାକୁ ଅନୁରୋଧ । କାରଣ ଗୋଟିଏ ଜାଗାରେ ଏତେ ଲୋକଙ୍କୁ ଭେଟିବାର ଏହାଠାରୁ ବଡ଼ ସୁଯୋଗ କେଉଁଠୁ ମିଳିପାରେ ?

ଶୀତତାପ ନିୟନ୍ତ୍ରିତ ହଲ୍‌ରେ ବୈଠକ ହେବ ଓ ତା' ପୂର୍ବରୁ ସାମାନ୍ୟ ଜଳଯୋଗ । ରାଜଧାନୀରେ ସିନା ଭଲ ହଲ୍ ଘରଟିଏ ଥିଲେ ହୁଅନ୍ତା । ପୁସ୍ତକ ଉନ୍ମୋଚନ, ସଭାସମିତି ପାଇଁ ଏହି ହୋଟେଲମାନଙ୍କର ଶୀତତାପ ନିୟନ୍ତ୍ରଣ ହଲ୍‌ଠାରୁ ଆଉ ଉପଯୁକ୍ତ ସ୍ଥାନ କେଉଁଠି ଥାଇପାରେ । ପ୍ରକୃତିର ମନୋରମ ପାର୍କ, ଦେବାଳୟର ପ୍ରଶସ୍ତ ଚଟାଣ ବା ନିଜ ଘରର ବୈଠକଖାନା ବ୍ୟବହାର କରିବାକୁ ଆଉ କେହି ପସନ୍ଦ କରେନା ।

ବୈଠକ ଆରମ୍ଭ ହେଲା । ବେଦପାଠ, ସ୍ୱାଗତ ସମ୍ଭାଷଣ, ପୁରସ୍କାର ପ୍ରଦାନ ପରେ ମୁଖ୍ୟଅତିଥି ଶ୍ରୀମତୀ ମହାରଣା କହିଲେ । ଉପନିଷଦ୍‌ର ଶ୍ଳୋକ ତାଙ୍କ ଓଠରୁ ଝରିପଡ଼ିଲା । ହଲ୍ ଘରେ ପୂର୍ଣ୍ଣିରହିଥିବା ମହିଳା ଲେଖିକାମାନେ ଉପନିଷଦ୍ ସମ୍ପର୍କରେ ସଚେତନ ଅଛନ୍ତି କି ନାହିଁ, ତାହା ଜଣା ନ ଥିଲେ ହେଁ ଅନ୍ନପୂର୍ଣ୍ଣା ଦେବୀଙ୍କର ବକ୍ତବ୍ୟ କିନ୍ତୁ ଧୀର ସ୍ଥିରଭାବେ ଶୁଣୁଥିଲେ ।

ସେ ନିଜର ସୁଚିନ୍ତିତ ମନ୍ତବ୍ୟରେ କହିଲେ ଏ ଦେଶକୁ ବର୍ତ୍ତମାନ ରକ୍ଷା କରିବାର ଦାୟିତ୍ୱ ସ୍ରଷ୍ଟାମାନଙ୍କର । ବହୁ ଚେଷ୍ଟା ସତ୍ତ୍ୱେ ସାମ୍ରାଜ୍ୟବାଦ ଶକ୍ତିମାନେ ଏ ଦେଶକୁ ନିଜ ଅଧୀନରେ ରଖିପାରିଲେ ନାହିଁ । ମୁଠାଏ ଲୁଣ ସତ୍ୟାଗ୍ରହ, ଅରଟରେ ସୂତାକାଟି ପିନ୍ଧିବା ସହିତ ରାମାୟଣ, ମହାଭାରତ, ଗୀତା ଓ ଉପନିଷଦ୍‌ର ମହାନ୍ ସତ୍ୟ ସମୂହର ଶକ୍ତି ବଳରେ ମହାନ୍ ଦୁର୍ଦ୍ଧର୍ଷ ଇଂରେଜ୍ ଜାତି ଏ ଦେଶରୁ ଚାଲିଗଲେ । ଭାରତୀୟ ସଂସ୍କୃତି, ଆଧ୍ୟାତ୍ମିକତା ଅଜେୟ ଓ ଅପରାଜେୟ । ବର୍ତ୍ତମାନ ସେହି ସଂସ୍କୃତିର ଅବକ୍ଷୟ । ଉପଭୋକ୍ତାବାଦର କ୍ରମାଗତ ଅନୁପ୍ରବେଶରେ ବ୍ୟକ୍ତି ବର୍ତ୍ତମାନ ସତ୍ତା, ସମ୍ପତ୍ତି ଓ ସମ୍ଭୋଗ ପାଇଁ ବ୍ୟସ୍ତ ଓ ହୀନକର୍ମରେ ବ୍ୟାପୃତ । ଏଥିରୁ ବ୍ୟକ୍ତିକୁ ମୁକ୍ତ କରିବାକୁ ହେବ, ଦେଶକୁ ମୁକ୍ତ କରିବାକୁ ହେବ । ଏହି କାମଟି ତ ସ୍ରଷ୍ଟାମାନଙ୍କର ।

'ବନ୍ଦେ ମାତରମ୍' କବିତାରେ ଯେମିତି ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମରେ ଦଳେ ଦଳେ ତରୁଣ ଝାସ ଦେଇଥିଲେ, ସେମିତି ଝାସ ଦେବାକୁ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା କହିବାବେଳେ ମନରେ, ହୃଦୟରେ, ଆତ୍ମାରେ ଯେପରି ବିଦ୍ୟୁତ୍‌ର ଶିହରଣ ସୃଷ୍ଟି ହେଉଥିଲା । ସଭାରେ କେତେ କେତେ ନିଜକୁ ବଡ଼ ବୋଲି ଅଭିମାନ କରୁଥିବା ସ୍ରଷ୍ଟାମାନେ ଏହି ପଦକ କଥା ନିଶ୍ଚୟ ଶୁଣିଥିବେ । ସେମାନେ

ନିଜ ହୃଦୟରେ ନିଶ୍ଚିତ ଅନୁଭବ କରିଥିବେ, ସେମାନେ ତାଙ୍କ ଏହି କଥା ନିକଟରେ କେତେ ଶ୍ରେଷ୍ଠ, କେତେ କ୍ଷୁଦ୍ର ସତେ !

ତାଙ୍କର ସେହି କଥା, ତାଙ୍କ ଜୀବନ ଓ ଜୀବନାନୁଭୂତ । ସେଥିପାଇଁ କହିବା ମାତ୍ରେ ଛୁଇଁଗଲା ଦେହରେ । ମନ ସବୁସତ୍ତା, ସମ୍ପତ୍ତି ଓ ସମ୍ଭୋଗକୁ ଏଡ଼େଇ ଦେଇ ତାଙ୍କର ପାଦତଳେ ଲୋଟିଯିବାକୁ ଚାହିଁଲା । ଏହା ହିଁ ତ ଏହି ଭାରତର ମହାନ୍ ଆଦର୍ଶ ।



# ଓଡ଼ିଆ ସାହିତ୍ୟର ଅମ୍ଳାନ ପ୍ରତିଭା- କୁନ୍ତଳା କୁମାରୀ

କୁନ୍ତଳା କୁମାରୀ ଓଡ଼ିଆ ସାହିତ୍ୟ ଜଗତରେ ଏକ ବିରଳ ନାମ । ତାଙ୍କୁ ନାରୀକବି ଭାବରେ ବହୁ ସମୟରେ ଚିତ୍ରଣ କରାଯାଇ ଆଲୋଚନା କରାହୁଏ । ତାଙ୍କୁ ନାରୀକବି ବୋଲି ଅନେକେ କହିବା ଓ ଲେଖିବା ଦ୍ୱାରା ସେ ବ୍ୟଥିତ ହେଉଥିଲେ ଏବଂ କହୁଥିଲେ, "ମୋ ପ୍ରତି ଏପରି ଦୟା କରିବାର ହେତୁ କ'ଣ ? ନାରୀଟିଏ ପୁରୁଷ ସହିତ ସମକକ୍ଷ ନ ହୋଇ କବିତା କିଛି ଲେଖିଥିଲେ, ତାଙ୍କୁ ଦୟାର୍ଦ୍ର ହୋଇ ନାରୀକବି କୁହାଯିବା ସମ୍ଭବ । କିନ୍ତୁ ମୁଁ କାହିଁକି ନାରୀକବି ହେବି ?" କୁନ୍ତଳା କୁମାରୀଙ୍କ ସାହିତ୍ୟ କୃତି, ଜୀବନୀ ସହିତ ପରିଚିତ ହେବା ପରେ 'ମାନସ'ରେ ଦୁଇଗୋଟି ପ୍ରବନ୍ଧ ବହୁଦିନ ତଳେ ଲେଖିଥିଲି । ତାଙ୍କ ପ୍ରତି ମୋର ଏକ ଅହେତୁକ ଆକର୍ଷଣ ବୃଦ୍ଧି ପାଇଥିଲା । ଜଣେ ସାହିତ୍ୟିକର ସାହିତ୍ୟ ରଚନା ପ୍ରତି ଆକୃଷ୍ଟ ହେବା କିଛି ବଡ଼କଥା ନୁହେଁ; କିନ୍ତୁ କୁନ୍ତଳା କୁମାରୀ ଥିଲେ ଅସାମାନ୍ୟା ସାହିତ୍ୟିକା, ବିପ୍ଳବିଣୀ ଓ ସର୍ବୋପରି ଓଡ଼ିଶା ଓ ଓଡ଼ିଆ ପ୍ରତି ତାଙ୍କର ଅକଳନ ପ୍ରେମ ନିଶ୍ଚିତ ସାହିତ୍ୟିକଙ୍କଠାରେ ଦେଖିବାକୁ ମିଳେ ।

ତାଙ୍କ ଜୀବନ ଉପରେ ସ୍ୱାମୀ ବିବେକାନନ୍ଦଙ୍କର ପ୍ରଭାବ ପଡ଼ିଥିଲା । ସେ ନିଜ ବିଷୟରେ କହୁଥିଲେ, "ମୁଁ କାହା ସହିତ ଲଢ଼ି ମହାନ୍ ହେବାର ଚିନ୍ତାଧେନ କରିନି ନାହିଁ । ମୋର କୌଣସି ସୁଗନ୍ଧ ଥିଲେ ମୁଁ ମହମହ ବାସି ଉଠିବି । ଯେବେ କିଛି ନଥିବ, ତେବେ ମୁଁ ଅନ୍ଧକାରରେ ଲୀନ ହୋଇଯିବି । ବିଶେଷରେ ମୋର କୌଣସି ରଚନାଗତ ଦୋଷ କ'ଣ ମୋର ସମଗ୍ର ଜୀବନ ବା ସାହିତ୍ୟର ମାପକାଠି ।" ସେ ସ୍ୱାମୀ ବିବେକାନନ୍ଦଙ୍କର ବାଣୀ ଉଦ୍ଧାର କରି କହନ୍ତି, "ଜଣେ ଲୋକ ଦୁନିଆର ସବୁ ଆପେଲ ଗଛତଳୁ, ପଚାସଢ଼ା ଆପେଲଗୁଡ଼ିକ ଗୋଟାଇ ଆଣି ସେହି ପଚା ଆପେଲ ସଂପର୍କରେ ରାଶି ରାଶି ବହି ଲେଖିଦେଇପାରେ । ତଥାପି ଆପେଲ ଗଛର ସୌନ୍ଦର୍ଯ୍ୟ ଓ ତା'ର ବିପୁଳ ସମ୍ଭାବନା ସମ୍ପର୍କରେ ତାଙ୍କର କୌଣସି ଜ୍ଞାନ ନଥିବା ସମ୍ଭବ । ଯାହା ସର୍ବୋଚ୍ଚ ଓ ସର୍ବଶ୍ରେଷ୍ଠ ସଦ୍‌ଗୁଣ, ତାହାରି ମାପକାଠିରେ ହିଁ କୌଣସି ବ୍ୟକ୍ତିତ୍ୱ ମପାଯିବା ଉଚିତ୍ ।" ସେ ସ୍ୱାମୀଜୀଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଅନ୍ଧ ଧର୍ମବିଶ୍ୱାସକୁ ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ । ତାଙ୍କ

ଚରିତରେ ସ୍ୱାମୀଜୀଙ୍କର ସେହି ବଜ୍ର ନିର୍ଘୋଷବାଣୀପଦକ—"ଭଗବାନଙ୍କ ପୂଜା କରିବାର ଛଳନା କରିବା ଅପେକ୍ଷା ବର୍ବର ଜାତିର ଲୋକମାନଙ୍କ ଭଳି ଅଳୀକ ଦେବତାର ପୂଜା କରିବା ଭଲ" ଲେଖିହୋଇ ଯାଇଥିଲା ।

ତାଙ୍କର ଜନ୍ମ ୧୯୦୧ ମସିହା ଫେବୃୟାରି ୮ ତାରିଖ ଓ ମୃତ୍ୟୁ ୧୯୩୮ ମସିହା ଅଗଷ୍ଟ ୨୩ ତାରିଖ । ଏହି ସ୍ୱଳ୍ପ ଜୀବନକାଳ ମଧ୍ୟରେ ସେ ଓଡ଼ିଆ ସାହିତ୍ୟକୁ ବହୁଭାବରେ ନିଜର ସାଧନା, ବଳରେ ପୁଷ୍ଟ କରିଯାଇଛନ୍ତି । କୁନ୍ତଳା କୁମାରୀଙ୍କ କାବ୍ୟ ତାଲିକା (କ) ଅଞ୍ଜଳି (୧୯୨୨) (ଖ) ଉଚ୍ଛ୍ୱାସ (୧୯୨୪) (ଗ) ଅର୍ଚ୍ଚନା (୧୯୨୭) (ଘ) ସ୍ଫୁଲିଙ୍ଗ (୧୯୨୯) (ଙ) ଆହ୍ୱାନ (୧୯୩୦) (ଚ) ମଣିକାଞ୍ଚନ (ଅସମ୍ପୂର୍ଣ୍ଣ କାବ୍ୟ) ଓ ଉପନ୍ୟାସ (୧) ଭ୍ରାନ୍ତି (୨) ନଅତୁଣ୍ଡୀ (୩) କାଳିବୋହୂ (୪) ପରଶମଣି (୫) ରଘୁ ଅରକ୍ଷିତ (୬) ଶଶପଞ୍ଚ (ଅସଂପୂର୍ଣ୍ଣ) ଓ ଅନ୍ୟାନ୍ୟ ପ୍ରବନ୍ଧ ଓ ପତ୍ରାବଳୀ ଦେଖାଯାଏ ।

ଯଦି ଫକୀରମୋହନ ସେନାପତିଙ୍କୁ ଓଡ଼ିଆ କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସର ଜନକ ବୋଲି କୁହାଯାଏ, ତେବେ କୁନ୍ତଳା କୁମାରୀ ସାବତ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରି ଏହାକୁ ନିଜ ଗୋଡ଼ରେ ଠିଆ ହେବାରେ ସାହାଯ୍ୟ କରିଛନ୍ତି । ଏହା ଅସ୍ୱୀକାର କରାଯାଇ ନପାରେ । ସେ କବିମାନଙ୍କ ମଧ୍ୟରେ ଏକ ଉଚ୍ଚତର ସ୍ଥାନ ଦାବି କରନ୍ତି । ତାଙ୍କୁ ଗୁପ୍ତାବାଦୀ, ରହସ୍ୟବାଦୀ କବି ଭାବରେ ଚିହ୍ନଣ କରାଯିବା ବେଳେ ତାଙ୍କ ଉପନ୍ୟାସ ପ୍ରତି ଅନେକଙ୍କ ଦୃଷ୍ଟିପଡ଼େ ନାହିଁ । କିନ୍ତୁ ତାଙ୍କର ଉପନ୍ୟାସକୁ ଆଲୋଚନା କଲେ ତାଙ୍କ ଗୁଣାତ୍ମକ ମାନର ପରିପ୍ରକାଶ ପରିଲକ୍ଷିତ ହୁଏ । ତାଙ୍କର ପ୍ରଥମ କବିତା "ତାରି ପ୍ରତି" । ଏଥିରେ ଜାତୀୟ ଆନ୍ଦୋଳନର ଚେତନା ଅବଶ୍ୟ ପ୍ରକାଶ ପାଇ ନଥିଲା । ସେ ଥିଲେ ବିପ୍ଳବିନୀ । ଦେଶ ମିଶ୍ରଣ ବେଳେ ଇଂରାଜୀରେ ଏକ କବିତା ରଚନା କରିଥିଲେ । ତା'ର ନାଁ ଦେଇଥିଲେ, The Neglected Land "ଅବହେଳିତ ଦେଶ" । ଜଣେ ଓଡ଼ିଆ ମହିଳା ନିଜର ଜନ୍ମଭୂମି ପାଇଁ ଇଂରେଜୀରେ କବିତା ଲେଖିପାରେ ଏହାହିଁ ଥିଲା ସେ ସମୟର ଆଶ୍ଚର୍ଯ୍ୟ । ତାଙ୍କର ସବୁବେଳେ ଲକ୍ଷ୍ୟ ଥିଲା ଓଡ଼ିଆ ଜାତି ଓ ଭାଷାକୁ ଉଠାଇବା । ସେ ଲେଖିଥିଲେ—

"ଓଡ଼ିଆ ଏଥର ମଣିଷ ହୁଅ,
ସହିଲଣି ବହୁ କଷଣ ବିପତ୍ତି
ନିଜ ଗୋଡ଼େ ଏବେ ଛିଡ଼ା ହୁଅ ।" ଇତ୍ୟାଦି

ତାଙ୍କର ଉପନ୍ୟାସରେ ଗାନ୍ଧିଜୀଙ୍କର ଚିନ୍ତାଧାରା ସୁସ୍ପଷ୍ଟ । ସେ ଉପନ୍ୟାସକୁ ଜାତୀୟ ଆନ୍ଦୋଳନର ପରିପ୍ରସ୍ତୁର ଭାବରେ ବ୍ୟବହାର କରିଛନ୍ତି । ସରଳ, ସାବଲୀଳ

ଢଙ୍ଗରେ ଲେଖା ହୋଇଥିବା ଏହି ଉପନ୍ୟାସଗୁଡ଼ିକରେ ସେ କାଳର ଗ୍ରାମ୍ୟ ପରିବେଶ, ସହରର ଚାଲିଚଳଣି ଇତ୍ୟାଦି ବିଭିନ୍ନ ଚରିତ୍ରମାନଙ୍କଠାରେ ଦେଖିବାକୁ ମିଳେ । ଯଦିଓ ପ୍ରଚାରଧର୍ମୀ ଲେଖା ତାଙ୍କ ଉପନ୍ୟାସର କଳା ଓ ସୌଷ୍ଠବକୁ ହାନି କରୁଛି ଏବଂ ମନୋବୈଜ୍ଞାନିକ ବିଶ୍ଳେଷଣର ଅଭାବ ରଖେ, ତଥାପି ସେ ମଧ୍ୟବିତ୍ତ ସମାଜର ସୁସ୍ପଷ୍ଟ ଚିତ୍ରଦେବାକୁ ସକ୍ଷମ ହୋଇଛନ୍ତି ।

ତାଙ୍କର କାଳିବୋହୂ ଉପନ୍ୟାସରେ ବାଲାଶ୍ରମ ବିଧବାର ଦୁଃଖରେ ସହାନୁଭୂତିଶୀଳା ହୋଇ ସେ ତା'ର ଯେଉଁ ଚିତ୍ର ଉପସ୍ଥାପିତ କରିଛନ୍ତି, ସେଥିରେ ଦେଶସେବା ଓ ସମାଜ ସଂସ୍କାରର ଚିତ୍ର ଦେଖିବାକୁ ମିଳେ । କୁନ୍ତଳା କୁମାରୀ 'କାଳୀବୋହୂ' ଉପନ୍ୟାସରେ କୃଷି ବିଦ୍ୟାଳୟର ସ୍ୱପ୍ନ ଦେଖୁଥିଲେ । ସେ ମଦ୍ୟପାନ ଓ ଗୋ ମାଂସ ଭକ୍ଷଣ ବିରୁଦ୍ଧରେ ଥିଲେ ଏବଂ ଏହା ସମାଜରେ ବ୍ୟାପକ ନହେବା ସେ ଇଚ୍ଛା କରୁଥିଲେ । ତାଙ୍କର 'ରଘୁ ଅରକ୍ଷିତ' ଉପନ୍ୟାସ ଏକ ସତ୍ୟଘଟଣା ଉପରେ ଆଧାରିତ । କଟକ ତଲହଟି ଅଞ୍ଚଳର, ଏକ ଚୌଧୁରୀ ବ୍ରାହ୍ମଣ ଘରେ ସେ ଏହି ପ୍ଲଟ୍ଟି ପାଇଥିଲେ । ଚନ୍ଦ୍ରଶେଖର ଚୌଧୁରୀ, ସରସ୍ୱତୀ, ପିଚେଇ ନାନୀ, ରଘୁନାଥ, ସୀତା ଆଦି ନାମଗୁଡ଼ିକ କାଳ୍ପନିକ ନୁହେଁ । ସୀତାକୁ ଚୌଧୁରୀ ବିଡ଼ି ଘରେ ବିବାହ ଦେଲେ । ସେ ବିଧବା ହେଲା । ରଘୁନାଥ ଦେଶାନ୍ତରୀ ହେଲା । ଉପନ୍ୟାସ ଗୁଡ଼ିକରେ ସେ ଜଣେ ସମାଜ ସଂସ୍କାରିକା ।

'ଚିତ୍ରପଟ' ଉପନ୍ୟାସରେ ସେ ସମୟର ଯୁବକମାନେ ପାଠପଢ଼ି କିପରି ଧର୍ମାନ୍ତରିତ ହେଉଥିଲେ ତା'ର ନିଖୁଣ ଚିତ୍ର ଦିଆଯାଇଛି । ଚିତ୍ରପଟ ଉପନ୍ୟାସର କଥାବସ୍ତୁରେ ପାନା ଓ ଗେଲେଇର ପୁତ୍ର ଜଗନ୍ନାଥ ଜନାଥନ୍‌ରେ ପରିଣତ ହୋଇଛି, କଲିକତାରେ ଚାକିରୀ କରି ଜଣେ ଚରିତ୍ରହୀନ ବଙ୍ଗାଳୀ କବଳରେ ପଡ଼ିଛି । ମୁମୂର୍ଷୁ ଅବସ୍ଥାରେ ତାକୁ ଜଣେ ମୁସଲମାନ ଘରୁ ଉଦ୍ଧାର କରାହୋଇଛି । ଆଦର୍ଶ ଖ୍ରୀଷ୍ଟିୟାନ୍ ଯୁବକ ହାରବାବୁଙ୍କ ପାଳିତାକନ୍ୟା ଶଶୀକୁ ଜନାଥନ୍ ବିବାହ କରିଛି । ମାତ୍ର ଅଳ୍ପଦିନ ଗୃହ ସଂସାର କଲାପରେ ଶଶୀର ମୃତ୍ୟୁ ହୋଇଛି ।

କୁନ୍ତଳା କୁମାରୀଙ୍କର ରଚନାର ବୈଚିତ୍ର୍ୟ, ଦେଶପ୍ରେମର ଜ୍ୱଳନ୍ତ ବହ୍ନିକୁ ବିହନ କରିବାକୁ ସାର୍ଥକ ହୋଇଛି । ତେଣୁ ତାଙ୍କ ଜୀବନ ଉପରେ ଆଧାରିତ ଜୈନେନ୍ଦ୍ର କୁମାର 'କଲ୍ୟାଣୀ' ନାମରେ ଏକ ଉପନ୍ୟାସ ହିନ୍ଦୀରେ ଲେଖିଥିଲେ । ଯଦିଓ ସାରସ୍ୱତ ସାଧନା କ୍ଷେତ୍ରରେ ସେ ଏକ ମୁଖ୍ୟ ସ୍ଥାନର ଅଧିକାରିଣୀ, ତଥାପି ତାଙ୍କର ବିଚିତ୍ର ଔପନ୍ୟାସିକ ଜୀବନ ଅତ୍ୟନ୍ତ ଦୁଃଖଦ ଓ ପ୍ରେରଣାର ଉତ୍ସ ।

—

# ସାହିତ୍ୟୋତ୍ସବ—୧୯୮୮

ଓଡ଼ିଶାରେ ଦୀର୍ଘ ୯ ବର୍ଷ ଧରି ସାହିତ୍ୟୋତ୍ସବ ପାଳିତ ହେଉଛି । ସାହିତ୍ୟିକ-ମାନଙ୍କର ମିଳନ ପାଇଁ ଲେଖକ ସାମ୍ମୁଖ୍ୟର ଏ ପ୍ରକାର ପ୍ରଚେଷ୍ଟା ସକାଶେ ନିଶ୍ଚିତ ଭାବେ କର୍ମକର୍ତ୍ତାମାନେ ଧନ୍ୟବାଦାର୍ହ । ସାହିତ୍ୟୋତ୍ସବ କିନ୍ତୁ ସାହିତ୍ୟିକ ସୃଷ୍ଟି କରିପାରୁନି କିମ୍ବା ସାହିତ୍ୟର ବାତାବରଣ ସୃଷ୍ଟି କରିପାରୁନି । ଅପରନ୍ତୁ ଓଡ଼ିଶାର ସାହିତ୍ୟିକ ବାୟୁମଣ୍ଡଳ ଏକ ଧୂଆଁଳିଆ ପରିସ୍ଥିତିଦେଇ ଗତି କରୁଛି । ଅବଶ୍ୟ ଲେଖକ ସାମ୍ମୁଖ୍ୟ ପୁସ୍ତକ ମେଳା ସଙ୍ଗଠିତ କରି ସାଧାରଣ ଜନଗଣଙ୍କ ମନରେ ଏକ ସାହିତ୍ୟିକ ଚେତନା ଜାଗ୍ରତ କରିବାକୁ ସକ୍ଷମ ହୋଇଛି । ଏହି ବର୍ଷର ଉତ୍ସବରେ ଶହେ ବର୍ଷର ଉପନ୍ୟାସ ସାହିତ୍ୟ ସମ୍ପର୍କରେ ଆଲୋଚନା ହେବ ବୋଲି ସ୍ଥିରୀକୃତ ହୋଇଛି । ଓଡ଼ିଆ ଉପନ୍ୟାସର, ଶହେବର୍ଷ କମ୍ କଥା ନୁହେଁ । ଓଡ଼ିଆରେ ବେଶୀ ଉପନ୍ୟାସ ଲେଖା ହେଉନି ବୋଲି ବହୁ ଆଲୋଚନା, ସମାଲୋଚନା ହେଉଛି । ଓଡ଼ିଆରେ ସମାଲୋଚନା କ୍ଷେତ୍ର ଦୁର୍ବଳ ବୋଲି ମତ ପ୍ରକାଶ ପାଉଛି । ଓଡ଼ିଆ ସାହିତ୍ୟିକମାନେ ପ୍ରକାଶକମାନଙ୍କଠାରୁ ସେମାନଙ୍କର ନ୍ୟାଯ୍ୟ ପାଉଣା (ରୟାଲ୍‌ଟି) ପାଉନାହାନ୍ତି ବୋଲି ବହୁ ସାହିତ୍ୟିକବନ୍ଧୁ କ୍ଷୋଭ ପ୍ରକାଶ କରୁଛନ୍ତି । ପ୍ରକାଶକମାନେ ବହି ଛାପୁ-ନାହାନ୍ତି ବୋଲି ଲେଖକମାନେ ବହୁ କଷ୍ଟରେ ବହି ଛାପିବାର ଚେଷ୍ଟା କରୁଛନ୍ତି । ବହି ଛାପିଲେ ମଧ୍ୟ ରାଜା ରାମ ମୋହନ ଲାଇବ୍ରେରୀ ଫାଉଣ୍ଡେସନ, ବ୍ଲାକ୍‌ବୋର୍ଡ୍ ଅପରେସନ୍ ଇତ୍ୟାଦି ପାଇଁ ବହି କିଣିବା ସମୟରେ ଯଥାଯଥ ଭାବରେ ବିଚାର କରାଯାଇ କିଣିବା ହେଉନି । ସାହିତ୍ୟ ଏକାଡେମୀ ପୁରସ୍କାର ଘୋଷଣା କଲେ ମଧ୍ୟ ଏପର୍ଯ୍ୟନ୍ତ ପୁରସ୍କାର ପାଇବା ସାହିତ୍ୟିକମାନେ ପୁରସ୍କାର ପାଇବାକୁ ଅପେକ୍ଷା କରି ବସିରହିଛନ୍ତି । କେତେଦିନ ଅପେକ୍ଷା କରିବେ, ତାହା କହିହେବ ନାହିଁ ବୋଲି ଶୁଣିବାକୁ ମିଳୁଛି । ସାହିତ୍ୟିକ ପାଣିପାଗ ମୋଟାମୋଟି କହିଲେ ଶୁଖିଲା ଲାଗୁଛି । କୌଣସି ସାହିତ୍ୟିକର ଅନ୍ୟ ପ୍ରତି ଅନୁରାଗ ନାହିଁ ।

ସମଗ୍ର ବିଶ୍ୱରେ ବ୍ୟାପକ ପରିବର୍ତ୍ତନବେଳେ ଲେଖକୀୟ ଭାଷା ଓ ଭାବନାର ସଶକ୍ତ ପ୍ରହାର ଓଡ଼ିଆ ସାହିତ୍ୟରେ ଦେଖାଯାଉନି । ଏଠାରେ ଅନାହାରରେ ଲୋକ ମରୁଛନ୍ତି, ବେକାରୀ ଶିକ୍ଷିତ୍ ଯୁବକଙ୍କର ବଳକୁ ଭାଙ୍ଗିଦେଉଛି । ପ୍ରଗତିର ରଥ ଧୀରେ ଧୀରେ ଚାଲୁଛି ବୋଲି କୁହାଗଲେ ମଧ୍ୟ ସତରେ ଚାଲିବା ପରି ମନେ ହେଉନି ।

ଲେଖକମାନେ, କବିମାନେ, ସାହିତ୍ୟିକମାନେ ଏଥିପ୍ରତି ସଚେତନ ଥିବା ଭଳି ହୃଦ୍‌ବୋଧ ହେଉନି । ନିଜ ସରକାରୀ, ବେସରକାରୀ ଗ୍ରୁପଙ୍କୁ ମଜବୁତ୍ ସ୍ଥିତି କରି ଆଉ କିଛି ପାଇବାର ସ୍ୱାର୍ଥଲାଳସା ମଧ୍ୟରେ କେବଳ ଫମ୍ପା ଆହ୍ୱାନ ଦେଉଛନ୍ତି । ଯେ ଯାହା ବ୍ୟକ୍ତିଗତ ସ୍ତରରେ ଲୁହନ୍ତି, ତା' ଦେଖାଇବାକୁ ପ୍ରୟତ୍ନ କରୁଛନ୍ତି ।

ଜନଗଣଙ୍କର ସାହିତ୍ୟିକମାନଙ୍କ ଉପରେ ଭରସା ରହିପାରୁନି । ତଥାପି ସେମାନେ ଯେ ସାହିତ୍ୟକୁ ଆଦର କରୁନାହାନ୍ତି ତା' ନୁହେଁ । ଏଭଳି ପରିସ୍ଥିତିରେ ଲେଖକମାନଙ୍କର ସାହିତ୍ୟୋତ୍ସବ ହେବାକୁ ଯାଉଥିବା ଖୁସିର କଥା—ଆନନ୍ଦର କଥା । ମାତ୍ର ଲେଖକମାନେ ଆଲୋଚନା କଲାବେଳେ ନିର୍ଭିକ ଭାବରେ "ସତ୍ୟଂ ବଦିଷ୍ୟାମି" କରିବେ କି ? ସମସ୍ତେ ମାୟାପଟଳ ମଧ୍ୟରେ ଆବୃତ ହୋଇରହିଛନ୍ତି । ସେମାନେ ସତ୍ୟଦ୍ରଷ୍ଟା ହୋଇ ମାୟା ଜାଲକୁ ଛିନ୍ନ କରିବା କଥା । ତାହା ଯଦି କରନ୍ତି, ତେବେ ଜନଗଣଙ୍କ ମନରେ ସାହିତ୍ୟ ପ୍ରତି ଅନୁରାଗ ହେବ ଏବଂ ସାହିତ୍ୟୋତ୍ସବ ସଫଳ ହେବ ।



# ପଦ୍ମଶ୍ରୀ ଉପାଧିଟିଏ

"ପଦ୍ମଶ୍ରୀ" ଉପାଧିକୁ ବାରମ୍ବାର ପ୍ରତ୍ୟାଖ୍ୟାନ କରିଥିବା ବିଶିଷ୍ଟ ସାହିତ୍ୟିକ ଓ ଔପନ୍ୟାସିକ ସ୍ୱର୍ଗତଃ ସୁରେନ୍ଦ୍ର ମହାନ୍ତିଙ୍କୁ କେନ୍ଦ୍ର ସରକାର ପୁନର୍ବାର ଏବର୍ଷ ପ୍ରଦାନ କରିଛନ୍ତି । ଏହା କେବଳ ସ୍ୱର୍ଗତଃ ମହାନ୍ତିଙ୍କ ପ୍ରତିଭା ପ୍ରତି ଅସମ୍ମାନ ନୁହେଁ, ବରଂ ସମଗ୍ର ଓଡ଼ିଆ ଜାତି ପ୍ରତି ଅସମ୍ମାନସୂଚକ । ପଦ୍ମବିଭୂଷଣ, ପଦ୍ମଭୂଷଣ, ପଦ୍ମଶ୍ରୀର ଲମ୍ବା ତାଲିକା ମଧ୍ୟରୁ ଓଡ଼ିଶାରୁ କେବଳ ଜଣେ ଯାହା ପୁନଶ୍ଚ ସମ୍ମାନିତ ବ୍ୟକ୍ତିଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ । ଭାରତ ଦରବାରରେ ଓଡ଼ିଶା କାହିଁକି ଏତେ ଆଶାଂକେସ୍ତ । ଏହାର ମୂଳକଥାଟି ହେଉଛି ଆମେ ସମସ୍ତେ କେବଳ ବ୍ୟକ୍ତି ସର୍ବସ୍ୱ । ଆମେ ସଙ୍ଗଠିତ ହୋଇ ସ୍ୱର ଉତ୍ତୋଳନ କରିବାକୁ ଅସମର୍ଥ । ରାଜନୈତିକ ନେତୃତ୍ୱ ନିଜର ଦଳଗତ ସ୍ୱାର୍ଥ ଓ ବ୍ୟକ୍ତିଗତ ସ୍ୱାର୍ଥକୁ ହାସଲ କରିବା ପାଇଁ ବିଭିନ୍ନ ଫମ୍ପା ସ୍ଲୋଗାନ ଦେଇ କ୍ଷମତାକୁ ଆସିବା ପରେ ସେମାନେ ରାଜ୍ୟବାସୀଙ୍କୁ ଦେଇଥିବା ପ୍ରତିଶ୍ରୁତି ଭୁଲି ନିଜର ସ୍ୱାର୍ଥକୁ ପାଇବା ପାଇଁ କ୍ଷମତାର ଗୋଷ୍ଠୀ କନ୍ଦଳ ମଧ୍ୟରେ ଲାଗିଯାନ୍ତି । ଓଡ଼ିଶାରେ ଏହା ନିତ୍ୟ ନୈମିତ୍ତିକ, କୌଣସି ରାଜନୈତିକ ନେତୃତ୍ୱଠାରୁ ବେଶୀ କିଛି ଆଶା କରିବା ଭ୍ରମ । ଏଇଠି ସେ ସ୍ଥାନକୁ ପୂରଣ କରିବାକୁ ଆଗେଇ ଆସିବାକୁ ହେବ ଲେଖକ, କବି, ଗାଳ୍ପିକ, କଳାକାର, ଆର୍ଟିଷ୍ଟମାନଙ୍କୁ । ସେମାନେ ନିଜର ବ୍ୟକ୍ତିଗତ ଉନ୍ନତି ପାଇଁ ଚେଷ୍ଟା କଲାବେଳେ ସମଗ୍ର ଓଡ଼ିଆ ଜାତିର ସ୍ୱାଭିମାନକୁ ଭୁଲିଯିବା ଉଚିତ ନୁହେଁ । ବିଭିନ୍ନ ସଭା-ମଞ୍ଚରେ ଭାଷଣ ଦେଇ ଆମେ ଆମର ଲୋକମାନଙ୍କୁ ଯେତେ ବଡ଼ ବୋଲି କହିଲେ ମଧ୍ୟ ସେମାନେ ଭାରତ ଆକାଶରେ ଉଜ୍ଜ୍ୱଳ ତାରକା ହୋଇପାରିବେ ନାହିଁ । ଯେତେଦିନ ପର୍ଯ୍ୟନ୍ତ ଆମେ ସମସ୍ତେ ମିଶି ସେମାନଙ୍କୁ ପ୍ରତିଷ୍ଠିତ କରିବାର ଚେଷ୍ଟା କରିନାହୁଁ ।

ସ୍ୱର୍ଗତଃ ସୁରେନ୍ଦ୍ର ମହାନ୍ତିଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରି ଭାରତ ସରକାର ଯେଉଁ ଅସମ୍ମାନ ପ୍ରଦର୍ଶନ କଲେ, ତାହା ପ୍ରତ୍ୟେକ ଓଡ଼ିଆମାନଙ୍କ ପାଇଁ ଲଜ୍ଜାର ବିଷୟ । ସାହିତ୍ୟିକ ବନ୍ଧୁମାନେ ଯଦି ନିଜର ସମ୍ମିଳିତ ସ୍ୱର ଉତ୍ତୋଳନ ନ କରନ୍ତି, ତେବେ ଭାରତ ଦରବାରରେ ଓଡ଼ିଶା ଚିରଦିନ ଅବହେଳିତ ହୋଇରହିଥିବ ।

ସାହିତ୍ୟିକ ଏକତା ସମ୍ଭବ କି ?



# ସାମ୍ୟବାଦୀ କବି ଅନନ୍ତ ପଟ୍ଟନାୟକ

ରକ୍ତ ଶିଖା, ତର୍ପଣକରେ ଅଙ୍କ, ଶାନ୍ତି ଶିଖା, ଅଲେଖା ଲେଖା ଓ ଛୁରିର ଛୁଟା ପ୍ରଭୃତି ସୃଷ୍ଟିମାନଙ୍କର କବି ଅନନ୍ତ ପଟ୍ଟନାୟକ ତାଙ୍କ ସାରସ୍ୱତ ଶିଳ୍ପ ମନ୍ଦିରରେ ବହୁ ରାଗର ଝଙ୍କାର ଆଣିଛନ୍ତି । ତାଙ୍କର ସାମ୍ୟବାଦୀ ଚିନ୍ତାଧାରା ଓ ମାର୍କସୀୟ ଦର୍ଶନ ତାଙ୍କ ସାହିତ୍ୟକୁ ଶକ୍ତିଶାଳୀ ଓ ଗମ୍ଭୀର କରିଛି । ସାମାଜିକ ଶୋଷଣ, ଅନ୍ୟାୟ ଅତ୍ୟାଚାର ଓ ଅନ୍ଧ ବିଶ୍ୱାସ ବିରୁଦ୍ଧରେ ତାଙ୍କ ଲେଖନୀ ଜାଗ୍ରତ ହୋଇ ଯେଉଁ ଆଘାତ ଦେଇଛି, ସେଥିରେ ଅନେକେ କ୍ଷତବିକ୍ଷତ ହୋଇଛନ୍ତି । ତାଙ୍କର ସୃଷ୍ଟି ପ୍ରଚାରଧର୍ମୀର ଅନ୍ଧ ଗଳିରେ ବାଟବଣା ହୋଇ ନାହିଁ । ସେ ଥିଲେ ନିଚ୍ଛକ କବିଟିଏ । କବିର ମନ ଓ କବିର ହୃଦୟ ନେଇ ଏପରି ଅଗ୍ନିବର୍ଷୀ ବ୍ୟକ୍ତିତ୍ୱ ଓଡ଼ିଆ ସାହିତ୍ୟରେ ବିରଳ । ସାହିତ୍ୟର ଇତିହାସରେ ସେ ଅତୁଳ ଓ ଅଭିଜ୍ଞ । ଆଧୁନିକ କବିତାର ମାନସିକତା, ଭାଷା ଓ ଶୈଳୀ ସହିତ ଲୋକକଥିତ ଭାଷାଭଙ୍ଗୀର ସମନ୍ୱୟ କବି ଅନନ୍ତ ପଟ୍ଟନାୟକଙ୍କର ବିଶେଷତ୍ୱ । ସେ ଥିଲେ ମାନବବାଦୀ କବି ।

ତାଙ୍କ କବିତାରେ ସମ୍ବେଦନଶୀଳତା ଓ ପ୍ରାଣ ପ୍ରାଚୁର୍ଯ୍ୟ ସହିତ ସମାଜ-ବୋଧର ପରିପ୍ରକାଶ ଘଟିଛି । ସେ ବିପ୍ଳବୀ କବି ଥିଲେ । ତାଙ୍କ କବିତାର ଉତ୍ତାଳ ତରଙ୍ଗରେ ଭାସି ଚାଲିଥିଲେ ସ୍ୱାଧୀନତା ସଂଗ୍ରାମୀମାନେ । ସେ ଲେଖିଥିଲେ—

"ଜନନୀର ଆଖି ଶିଶୁର ଲୋତକେ, ଏ ଧରା ନ ଯିବ ଭାସି
ଶାନ୍ତି-ସମରେ ଖେଳିବୁ ଆମେ ହୋ, ମଣିଷ-ଶତ୍ରୁ ନାଶି ।"

ନୂତନ ସମାଜ ଗଠନ ପାଇଁ ପୁରାତନ, ଜୀର୍ଣ୍ଣ ସମାଜର ଧ୍ୱଂସ ଅନିବାର୍ଯ୍ୟ । ଏହାକୁ ଲକ୍ଷ୍ୟରଖି ସେ "ତୁମ ଶୋଣିତ ଧାର" କବିତାରେ ଲେଖିଥିଲେ—

ଏକ ହାତେ ଦଳି ପୁରୁଣା ସମାଜ, ଆର ହାତେ ଗଢ଼ି ନୂଆ
ସମତା ପ୍ରୀତିର ସୁରରେ ଶୋହିବୁ, ସୁନା ପାଲଟିବ ଲୁହା

ତାଙ୍କ ଜୀବନ ଥିଲା ଗଣଙ୍କ ପାଇଁ ଉଦ୍ଦିଷ୍ଟ । ତାଙ୍କ ଶପଥ କବିତାରେ ସେ ଲେଖିଥିଲେ—

"ମୁହିଁ ତ ନୁହଁ ମୋହର ପାଇଁ, ସବୁର ପାଇଁ ମୋହର ପ୍ରାଣ
ସମତା ପଥେ ପତାକା ବାନ୍ଧି, ଶାନ୍ତିର ମୁଁ ରଚିବି ଗାନ ।"

ସେ ଥିଲେ ବାସ୍ତବବାଦୀ ଶିଳ୍ପୀ । ତଥାପି ତାଙ୍କ କାବ୍ୟ ଚେତନାରେ କଳ୍ପନାର ଡେଣା ଥିଲା । କବି ଚିରକାଳ ନୂତନତାର ପ୍ରସ୍ୱାସୀ । ସଦାସର୍ବଦା ମୁକ୍ତପ୍ରୟାସୀ । ତେଣୁ ତାଙ୍କର ମୃତ୍ୟୁକୁ ମଧ୍ୟ ଭୟ ନ ଥିଲା । ସେ ମୃତ୍ୟୁକୁ ଲକ୍ଷ୍ୟକରି ଗାଇଥିଲେ—

"ମୃତ୍ୟୁ ହେ ! ତୁମେ ଆସିଲେ ସେ ଦିନ
ମୁଗ୍ଧ ତୁମକୁ ଚୁମ୍ବି
ତୁମ ଆଣବିକ ଆଶ୍ଳେଷେ ହିଜ
ନାଚିଯିବ କଉତୁକେ,....ଇତ୍ୟାଦି ।"

ନବଯୁଗ ସାହିତ୍ୟ ସଂସଦର ସ୍ରଷ୍ଟା, ଓଡ଼ିଶା ପ୍ରଗତିଶୀଳ ଲେଖକ ସଂଘର ଉଦ୍ୟୋକ୍ତା କବି ଅନନ୍ତ ପଟ୍ଟନାୟକଙ୍କର କାଳ୍ପନିକ ମଣିଷ ସଜିଆରେ ବହୁ ଲୋକ ଉଦ୍‌ବୁଦ୍ଧ ହୋଇଥିଲେ, ପ୍ରଶଂସକ ଥିଲେ । ତାଙ୍କର ଶିଳ୍ପୀଆତ୍ମା, ସଂଗଠନରେ ସଂଗ୍ରାମରେ ବନ୍ଦୀ ନ ହୋଇ ଧୂଳିଧୂସର ରାସ୍ତାରେ ଘୂରିବୁଲି ମଣିଷ ପାଇଁ ଅବଚ୍ଛିନ୍ନ, ପ୍ରଗାଢ଼ ସ୍ନେହ ବାଣ୍ଟି ଚାଲିଥିଲା ।

ତାଙ୍କର ଶିଳ୍ପୀଧର୍ମ କେବଳ କାବ୍ୟ ଚେତନା ମଧ୍ୟରେ ସୀମାବଦ୍ଧ ନ ହୋଇ ଗଦ୍ୟ ସାହିତ୍ୟ ଓ ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ବ୍ୟାପୃତ ଥିଲା । ମାର୍କସିମ୍ ଗର୍କିଙ୍କର 'ମଦର' ଉପନ୍ୟାସର ଓଡ଼ିଆ ଅନୁବାଦ 'ମା', ଭାଗ୍ୟରୁ ଖିଏ, ଶିକ୍ଷାନବିଶ, ସତ୍ୟ ହେଲା ମଣିଷର ସ୍ୱପ୍ନ ଇତ୍ୟାଦି ଅନୁବାଦ ଗ୍ରନ୍ଥ ଓ ଚଢ଼ାଉତ୍ତରି ଗଳ୍ପ ସଂକଳନ ତାଙ୍କ ଗଦ୍ୟ ରଚନାର ସ୍ୱୀକୃତି ପ୍ରଦାନ କରେ । 'ଶିଶୁଲେଖା'ର ସଂପାଦକ ଓ ଶିଶୁ ସାହିତ୍ୟ ସମିତିର ସଂପାଦକ ଭାବେ କବି ଅନନ୍ତ ପଟ୍ଟନାୟକ ଅନେକ ଶିଶୁ ସାହିତ୍ୟ ପୁସ୍ତକ ରଚନା କରିଛନ୍ତି । ତାଙ୍କର ଶିଶୁ ସାହିତ୍ୟ ପୁସ୍ତକ ହେଲା, ଅରଗଡ଼ ବରଗଡ଼, ଛବିଟିକ ଗପଟିଏ, ଗପୁଡ଼ି ମାଉଁକ ଧାପୁଡ଼ି ଧାଉଁ, କୁନିକୁନି, ଭଲ ପଢ଼—ଲଢ଼େଇ କରନା ପୁଣି, ଲାଲ ଟୁକୁ ଟୁକୁ ସୁରକୁଟିଏ, ମୋ ପଢ଼ା ବହି, କସରି ଘୋଡ଼ା (ଗଳ୍ପ) ତୁମେ ଜାଣ କି ? ଅନୁବାଦ ଇତ୍ୟାଦି ଅନ୍ତର୍ଭୁକ୍ତ ।

କେନ୍ଦ୍ର ସାହିତ୍ୟ ଏକାଡେମୀ, ନେହେରୁ ପୁରସ୍କାର ଇତ୍ୟାଦି ଅନେକ ପୁରସ୍କାରରେ ବିମଣ୍ଡିତ କବି ଅନନ୍ତ ପଟ୍ଟନାୟକ ଉତ୍ତରପୁରୁଷମାନଙ୍କ ପାଇଁ ପ୍ରେରଣାର ଉତ୍ସ । ପ୍ରଗତିବାଦୀ ଚେତନାର ପଥପ୍ରଦର୍ଶକ କବି ପଟ୍ଟନାୟକ ଓଡ଼ିଆ ସାହିତ୍ୟର ଚିରକାଳ ଅମ୍ଳାନ ଓ ଅଲିଭା କାବ୍ୟପୁରୁଷ ହୋଇ ରହିବେ ।



# ସାଂପ୍ରତିକ ପରିସ୍ଥିତି ଓ ଭଗବତୀ

'ଭଗବତୀ ପରିକ୍ରମା' ନାମରେ 'ନବୀନ ବିଶ୍ୱ ସାହିତ୍ୟ ସଂଗଠନ' ଏକ ସଂକଳନର ପ୍ରଥମ ସଂସ୍କରଣ ୨୩।୧୦।୮୨ ତାରିଖରେ ପ୍ରକାଶିତ ହୋଇଥିଲା। ସେଥିରେ ପରିଚାଳନା ସମ୍ପାଦକ ଲିପିବଦ୍ଧ କରିଛନ୍ତି ଯେ ଯେତେବେଳେ ସେ ଲେଖା ପାଇଁ ଲେଖକ ବା ଚିନ୍ତାଶୀଳ ବ୍ୟକ୍ତିଙ୍କର ଦ୍ୱାରସ୍ଥ ହୋଇଛନ୍ତି, ସେତେବେଳେ ସେମାନେ ତାଙ୍କୁ ପ୍ରଶ୍ନ କରିଛନ୍ତି, "ତୁମେ କ'ଣ କମ୍ୟୁନିଷ୍ଟ ?" ଭଗବତୀଙ୍କର ବ୍ୟକ୍ତିତ୍ୱକୁ କୌଣସି 'ବାଦ' ମଧ୍ୟରେ ବନ୍ଦ କରି ରଖିବାର ଯଥାର୍ଥତା ନାହିଁ। ପ୍ରଗତିଶୀଳ ସାହିତ୍ୟ ଆନ୍ଦୋଳନର ଭଗୀରଥ ଭାବରେ ସ୍ୱଳ୍ପରଚନା ସମ୍ଭାର ମଧ୍ୟରେ ସେ ନୂତନ ଦିଗ୍‌ଦର୍ଶନ ଦେଇଯାଇଛନ୍ତି। ତାଙ୍କର ମୃତ୍ୟୁ ହେବାର ୪୯ ବର୍ଷ ପୂରିଗଲା। ଆରମ୍ଭ ହେଲା ୫୦ ବର୍ଷ। ଏହି ୫୦ ବର୍ଷ ଭିତରେ ଓଡ଼ିଆ ସାହିତ୍ୟରେ କି ପରିବର୍ତ୍ତନ ହୋଇଛି ଏବଂ ଏଥିନିମିତ୍ତ ଜନଗଣ କେତେ ମାତ୍ରାରେ ସଚେତନ, ତାହା ବିଗ୍ୱର କରିବାର ବେଳ ମଧ୍ୟ ଆସିଛି। ୧୯୩୭ ମଇ ମାସରେ ଯେତେବେଳେ ପ୍ରଥମେ 'ଆଧୁନିକ' ପ୍ରକାଶ ହେଲା ଭଗବତୀ ଚରଣ ନିଜକଥା ମାଧ୍ୟମରେ ଲେଖିଥିଲେ, "ଉଭୟ ଚିନ୍ତାରାଜ୍ୟରେ ଓ କର୍ମ-କ୍ଷେତ୍ରରେ ଏହି ଯେଉଁ ବିପ୍ଳବ ସୂତ୍ରପାତ ହେଉଅଛି, ଜନସାଧାରଣଙ୍କୁ ଏ ଦିଗରେ ସଚେତନ କରିବା ଓ ତାହା ଗ୍ରହଣ କରିବା ଲାଗି ପ୍ରସ୍ତୁତ କରିବାକୁ ସଙ୍କେତ ଦେବା ଏହାର ଅଭିପ୍ରାୟ।" ସାହିତ୍ୟର ଉଦ୍ଦେଶ୍ୟ ଏଇଆ। ସବୁ ସମୟରେ ସାହିତ୍ୟ ଜନଗଣଙ୍କର ଭାବନାକୁ ଛୁଇଁ ସମାଜରେ କ'ଣ ଘଟୁଛି ବା ଘଟିବା ଆବଶ୍ୟକ ତାହା ସୂଚିତ କରେ। ସାହିତ୍ୟ ସଦାସର୍ବଦା ସେହି ନୂତନତାର ବାର୍ତ୍ତାବହ।

"କଳା, ବିଜ୍ଞାନ, ସାହିତ୍ୟ, ଦର୍ଶନ ଆଦି ସମସ୍ତ ବିଷୟରେ ଦୁଇଟି ଦିଗ ଅଛି। ଗୋଟିଏ ଦିଗର କର୍ମ ସହିତ ସଂଯୋଗ ଅଛି, ତାହା କର୍ମ ତତ୍ପରତାର ପରିପୋଷକ। ଅନ୍ୟଟିର କୌଣସି ବାହ୍ୟ ଉଦ୍ଦେଶ୍ୟ ନାହିଁ। ତାହାର ଚର୍ଚ୍ଚାରେ ହିଁ ଉଦ୍ଦେଶ୍ୟର ଚରମ ପରିଣତି।' ଯାହା କର୍ମ ତତ୍ପରତାରେ ସହାୟକ, ତାହା ହିଁ ପ୍ରଗତିଶୀଳ। ତାହା ହିଁ ଜନଗଣଙ୍କ ସାହିତ୍ୟ। ରାମାୟଣ, ମହାଭାରତ, ଭାଗବତ, ଗୀତା ଇତ୍ୟାଦି ପୁରାଣଗୁଡ଼ିକୁ ନେଇ ଯଦି ଆଲୋଚନା କରିବା, ସେଥିରେ ଆମେ ମାନବର କର୍ମ ତତ୍ପରତା ପାଇବା।

ସ୍ୱାଧୀନତା ସମୟରେ ଯେଉଁମାନେ ସାହିତ୍ୟ ସୃଷ୍ଟିରେ ବ୍ୟାପୃତ ଥିଲେ, ସେମାନଙ୍କର ଲକ୍ଷ୍ୟ ଥିଲା ସମଗ୍ର ବିଶ୍ୱରୁ ପୁଞ୍ଜିବାଦ ବ୍ୟବସ୍ଥାର ବିଲୋପ, ସାମନ୍ତବାଦ

ଶାସନର ଶେଷ, ଶୋଷଣ, ଅତ୍ୟାଚାରକୁ ବନ୍ଦ କରି ଏକ ସନ୍ତୁଳିତ ସମାଜ ସୃଷ୍ଟି କରିବା ଯେଉଁଠି ମଣିଷ ମଣିଷ ପରି ବନ୍ଧୁତ୍ୱ ସ୍ନେହ ଓ ସୌହାର୍ଦ୍ଦ୍ୟର ଇମାରତ ସୃଷ୍ଟି କରିବ।

ବର୍ତ୍ତମାନ ସମାଜରେ ବହୁ ପରିବର୍ତ୍ତନ ଘଟିଛି। ଏହି ପରିବର୍ତ୍ତନର ଧାରା ଭିତରେ ମଣିଷର ସ୍ଥାନ କେଉଁଠି ଏବଂ ପରିବର୍ତ୍ତନ ମଣିଷକୁ, ସମାଜକୁ ଗତିଶୀଳ କରିବାକୁ ସକ୍ଷମ ହୋଇଛି ନା ନାହିଁ, ତାହା ହିଁ ସୂଚାଇ ଦେବା ସାହିତ୍ୟର ଭୂମିକା। ଓଡ଼ିଆ ସାହିତ୍ୟରେ ଅସଂଖ୍ୟ ଉପନ୍ୟାସ, ଗଳ୍ପ, କବିତା, ନାଟକ ଲେଖା ହେଉଛି ଓ ଲେଖା ଚାଲିଛି। ମଣିଷକୁ ଅସହାୟ ଭାବରେ ଚିତ୍ରଣ କରାଯାଉଛି। ମଣିଷ ଅନ୍ତଃସାର ଶୂନ୍ୟ ହୋଇ ଜୀବନ କଟାଉଛି।

ମଣିଷର କାହିଁକି ଏ ନିଃସଙ୍ଗତା, ଏ ଅସହାୟବୋଧ? ସଭ୍ୟତାର ଛାଞ୍ଚ ବଦଳିବାରେ ଲାଗିଛି। ସାହିତ୍ୟର ପ୍ରଭାବ ଜନଗଣଙ୍କ ଉପରେ ନାହିଁ। 'ଆନନ୍ଦ ମଠ' ଯଦି ବିପ୍ଳବର ସୁଅକୁ ତୀବ୍ର କରିପାରିଲା, 'ମାଷ୍ଟର ମଶାଇ' ଯଦି ଗ୍ରାମ କୃଷକକୁ ସ୍ୱାଧୀନତା ଆନ୍ଦୋଳନ ଭିତରକୁ ଟାଣିପାରିଲା, ତେବେ ଆଜିର ଉପନ୍ୟାସ, ଗଳ୍ପ ବା କବିତା କାହିଁକି ସେ ସଚେତନତା ସୃଷ୍ଟି କରିପାରିବ ନାହିଁ? ଏ ପ୍ରଶ୍ନ ପ୍ରତ୍ୟେକ ସାହିତ୍ୟିକ ନିଶ୍ଚୟ ନିଜକୁ ପଚାରୁଥିବେ।

ସାହିତ୍ୟ କେବଳ ସାହିତ୍ୟ ପାଇଁ ଉଦ୍ଦିଷ୍ଟ ନୁହେଁ। ସାହିତ୍ୟ ପରିଧିର କେନ୍ଦ୍ର ବିନ୍ଦୁ ସମାଜ ଓ ଜୀବନ। ସାହିତ୍ୟ ଜୀବନ ଧର୍ମୀ। ଏଣୁ ସାହିତ୍ୟର ବିଭିନ୍ନ ବିଭାଗ ଗୁଡ଼ିକର ରଚନା ଶୈଳୀ କେବଳ ଭାବପ୍ରବଣତା, ଆବେଗ ଉପରେ ଆଧାରିତ ହେଲେ, ରୋମାଣ୍ଟିସିଜ୍‌ମ ବା କଥକତା ତା'ର ମୁଖ୍ୟ ପ୍ରବୃତ୍ତି ହେଲେ ତାକୁ ସାହିତ୍ୟ ଭାବରେ ଗ୍ରହଣ କରାଯାଇପାରେନା।

ସାଂପ୍ରତିକ ମଣିଷ ପୁନରାୟ ଏକ ଅନ୍ଧକାର ବ୍ୟୁହ ଭିତରେ ବନ୍ଦୀ। ତା'ର ଆର୍ତ୍ତନାଦ, ତା'ର ଆର୍ଥିକ ସଙ୍କଟ ଯୁକ୍ତ ପ୍ରତି ଶଙ୍କାକୁଳ ସ୍ଥିତି, ରାଜନୈତିକ ବିଭ୍ରାନ୍ତ ଓ ପଳାୟନପନ୍ଥୀ ମନୋଭାବ ଶାସରେ ଶାସିତ। ମଣିଷ କ୍ରମଶଃ ହୋଇପଡ଼ୁଛି ସ୍ୱାର୍ଥ ସର୍ବସ୍ୱ। ସ୍ୱାର୍ଥବାଦ ମନୁଷ୍ୟର ଜୀବନ ସହିତ ଜଡ଼ିତ ହୋଇପଡ଼ୁଛି। ରାଜନୀତି ଆଦର୍ଶବାଦ ପରିବର୍ତ୍ତେ ସ୍ୱାର୍ଥବାଦକୁ ହିଁ ଗ୍ରହଣ କରିନେବା ଫଳରେ ସମାଜରେ ଜନଗଣଙ୍କ ପ୍ରତି ଯେଉଁ ସମ୍ବେଦନଶୀଳତା ପ୍ରକାଶ ପାଇବା କଥା ତାହା ମିଳୁ ନାହିଁ। ସାହିତ୍ୟ ଯେଉଁ ଭୂମିକାନେଇ କାର୍ଯ୍ୟ କରିବା କଥା, ତାହା ସାହିତ୍ୟରେ ପ୍ରତିଫଳିତ ହେଉ ନ ଥିବା ଏବଂ ତାକୁ ତୀକ୍ଷ୍ଣ ଓ ତୀବ୍ର ଭାବରେ ଆଲୋଚନା କରି ଖିନ୍‌ଭିନ୍ କରି ଦେଖିବାର ପ୍ରଚେଷ୍ଟା କରାଯାଉ ନାହିଁ। ସାହିତ୍ୟ ପ୍ରଗତିର ଧର୍ମୀ ହେବା ଉଚିତ

ନୁହେଁ ; କିନ୍ତୁ ସମାଜ ପ୍ରତି ତା'ର ଅଙ୍ଗୀକାରବଦ୍ଧତାକୁ ଭୁଲିଯିବା ଠିକ୍ ହେବ ନାହିଁ । ଡ଼: ନଟବର ସାମନ୍ତରାୟ ଲେଖିଛନ୍ତି, 'ସେ କେବଳ ଏ ଦେଶର ଯୁବ-ଶକ୍ତିକୁ ନୂତନ ସାହିତ୍ୟ ସୃଷ୍ଟି ପାଇଁ ଉପଯୁକ୍ତ ଉତ୍ସାହ ଦେଇପାରନ୍ତି । ଭଗବତୀଙ୍କ ସାହିତ୍ୟ ଏ ଦୃଷ୍ଟିରୁ ନୂତନତାର ବାର୍ତ୍ତାବହ ।

ଓଡ଼ିଆ ସାହିତ୍ୟର ଭବିଷ୍ୟତକୁ ଅଧିକ ସମୃଦ୍ଧ କରିବା ପାଇଁ ତରୁଣମାନେ ସେହି ବାର୍ତ୍ତାକୁ ଆଦର୍ଶଗତ ଭାବରେ ଗ୍ରହଣ କରି ଲେଖନୀ ଚାଳନା କଲେ ଓଡ଼ିଆ ସାହିତ୍ୟରେ ନୂତନ ମୋଡ଼ ସୃଷ୍ଟି କରିପାରିବେ । ସାହିତ୍ୟ ପ୍ରଚାରଧର୍ମୀ ନ ହୋଇ ଜନମତକୁ ଉଜ୍ଜୀବିତ କରିବାରେ ସକ୍ଷମ ହେବ ।



# ଶହୀଦ୍ ଲକ୍ଷ୍ମଣ ନାୟକ

ଲକ୍ଷ୍ମଣ ନାୟକ ଅଖଣ୍ଡର ଛିନ୍ନ ଖଣ୍ଡ ବୁଦ୍ଧାରେ । ସ୍ୱାଧୀନତା ସଂଗ୍ରାମରେ ଅସଂଖ୍ୟ ନରନାରୀ ଜୀବନର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଝାସ ଦେଇଥିଲେ । ସ୍ୱାଧୀନତା ଥିଲା ସେମାନଙ୍କର ଏକାନ୍ତ କାମ୍ୟ । ସବୁ ଦୁଃଖକଷ୍ଟକୁ ସେମାନେ ସହ୍ୟ କରି ନେଇଥିଲେ । ସେହିପରି ଏକ ବ୍ୟକ୍ତିତ୍ୱ ଲକ୍ଷ୍ମଣ ନାୟକ । କୋରାପୁଟର ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜନ୍ମଲାଭ କରି ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କଂଗ୍ରେସର ବାର୍ତ୍ତା ଘନଜଙ୍ଗଲ ମଧ୍ୟରେ ପ୍ରଚାର ଓ ପ୍ରସାର କରି ଲୋକମାନଙ୍କ ମଧ୍ୟରେ ସ୍ୱାଧୀନତାର ଚେତନା ଜାଗ୍ରତ କରାଇଥିଲେ ।

ଶହୀଦ୍ ଲକ୍ଷ୍ମଣ ନାୟକ ପୁସ୍ତକରେ ଲେଖକ ତାଙ୍କ ଜୀବନୀ, ବ୍ୟକ୍ତିତ୍ୱ ଓ ସର୍ବୋପରି ସ୍ୱର୍ଗତଃ ନାୟକଙ୍କର ତ୍ୟାଗପୂତ କାହାଣୀକୁ ଲିପିବଦ୍ଧ କରିଛନ୍ତି । ତେଣୁ ପୁସ୍ତକ ସରଳ ଓ ସାବଲୀଳ । ଏଥିରେ ଭାଷାର ବର୍ଣ୍ଣବୈଭବ ନାହିଁ ବା ଅଳଙ୍କାରର ସ୍ଫୁରଣ ନାହିଁ । କେବଳ ଘଟଣାବଳୀର ସମାହାର ।

ଘଟଣାଚକ୍ରରେ ଲକ୍ଷ୍ମଣ ନାୟକଙ୍କୁ ଦିଆଯାଏ ଫାଶୀ । ହସି ହସି ଫାଶୀ ଖୁଣ୍ଟରେ ଝୁଲିବା ପୂର୍ବରୁ ସେ ବଡ଼ ପାଟିରେ କହନ୍ତି, "ସୂର୍ଯ୍ୟ ଯଦି ସତ୍ୟ ହୋଇଥାଏ, ଚନ୍ଦ୍ର ଯଦି ସତ୍ୟ ହୋଇଥାଏ, ତେବେ ଭାରତମାତା ଯେ ସ୍ୱାଧୀନ ହେବ, ତାହା ମଧ୍ୟ ସେହିପରି ସତ୍ୟ ଏଥର ଦେଖାଅ କେଉଁଠି ଅଛି ତୁମର ଫାଶୀଖୁଣ୍ଟ ।

ପ୍ରତ୍ୟେକଙ୍କ ପାଇଁ ଏ ଜୀବନୀ ପଠନଯୋଗ୍ୟ । ଏ ଦେଶ ଓ ଜାତିର ଆତ୍ମାର ଅଧଃପତନବେଳେ ଶହୀଦ୍ ନାୟକଙ୍କ ପରି ଜୀବନ ଆମକୁ ଅନୁପ୍ରାଣିତ କରିବାରେ ସହାୟକ ହେବ ।

ଶ୍ରୀ ଦାଶରଥି ନନ୍ଦଙ୍କର ପ୍ରଚେଷ୍ଟା ବାସ୍ତବିକ୍ ଧନ୍ୟବାଦାର୍ହ । ପୁସ୍ତକରେ କେତେକ ସ୍ଥାନରେ ମୁଦ୍ରଣ ଜନିତ ତ୍ରୁଟି ପରିଲକ୍ଷିତ ହୁଏ; ମାତ୍ର ତାହା କୌଣସିସ୍ଥଳେ ପଢ଼ିବାରେ ବ୍ୟାଘାତ ସୃଷ୍ଟି କରୁନାହିଁ ।

# ଏକାନ୍ତ ବ୍ୟକ୍ତିଗତ

"ମଣିଷ ମନଜଗତର ଅଭ୍ୟନ୍ତରରେ ଅନେକ ଚେତନା ଲୁଚି ରହିଥାଏ । ଯାହାକୁ ପ୍ରକାଶ କରିବା ସହଜ ନୁହେଁ । ଲୁଚି ରହିଥିବା ଅନେକ ଚେତନାର ସ୍ୱର ଏବଂ ଅନେକ ଅସଫଳଗ୍ନ ଉପଲବ୍ଧିକୁ ବାହାର ଦୁନିଆ ସହ ସଂଶ୍ଳିଷ୍ଟ କରି ଦେଖିଲେ ଅତି ବ୍ୟକ୍ତିଗତ ସୁଖ, ଦୁଃଖ, କ୍ରୋଧ, କାମନା ସାଧାରଣରେ ପରିଣତ ହୁଏ" । ଏହା ହିଁ ଏକାନ୍ତ ବ୍ୟକ୍ତିଗତରେ ଅଭିବ୍ୟକ୍ତ ଲେଖକ ପ୍ରମୋଦ ପଣ୍ଡାଙ୍କର । ପଚିଶଟି ଗଳ୍ପର ସମାହାରରେ ଋଦ୍ଧିମନ୍ତ 'ଏକାନ୍ତ ବ୍ୟକ୍ତିଗତ' ଗଳ୍ପ ପୁସ୍ତକରେ 'ବ୍ୟକ୍ତିଗତ' ସୀମା ଦେଖିବାକୁ ମିଳେ ; ମାତ୍ର ଏକାନ୍ତ ଉକ୍ତ୍ୟ ରହି ପ୍ରତ୍ୟେକ ଗଳ୍ପ ନିଜକୁ ଏକାନ୍ତ ବୋଲି ଅନୁଭବ କରିବାରେ ସାହାଯ୍ୟ କରେ ।

ପରିବାର ଭିତରେ ପ୍ରତ୍ୟେକ ଲୋକ ତା' ନିଜ ଭିତରେ ସୀମାବଦ୍ଧ ରହିବାକୁ ଇଚ୍ଛା କରେ । ନିଜ ସ୍ତ୍ରୀ ସହିତ ସହରରେ ଜୀବନ କଟାଇବାକୁ ସମସ୍ତେ ସ୍ୱତନ୍ତ୍ର । ଘରୁ ଖସିଆସିବାର ବାହାନା ବହୁ ଭାବରେ ଖୋଜାଯାଏ ଏବଂ ପରିଶେଷରେ 'ମନୋଜକୁ ଖୁବ୍ ନିର୍ଦ୍ଦୟ ଭାବେ ସୁପ୍ରିୟାକୁ ଧରି ସହରକୁ ଫେରିବାକୁ ପଡ଼ିଲା । ଏ 'ଜୀବନ ସଙ୍ଗୀତ'ର ସ୍ୱର ପ୍ରତ୍ୟେକ 'ଏକାନ୍ତ ବ୍ୟକ୍ତି'ର ସ୍ୱର । ଜୀବନ ସଙ୍ଗୀତ ଗଳ୍ପଟି କେତେ ବାସ୍ତବକ୍ ଏଥିରୁ ଅନୁମିତ ହୁଏ ।

ବିଭିନ୍ନ ଗଳ୍ପର ଧାରା ବିଭିନ୍ନ ହେଲେ ମଧ୍ୟ ବିଷୟର ପ୍ରତିସ୍ଥାରେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଏଠାରେ ଲେଖକ ଏକ ପ୍ରକାରର କଥାବସ୍ତୁକୁ ବିଭିନ୍ନ ଢଙ୍ଗରେ କହିବାକୁ ଚେଷ୍ଟାକରିଚନ୍ତି, ତେଣୁ "ନିକଟ—ଦୂରତ୍ୱ, ମୁଁ—ଆମେ—ଅନ୍ୟମାନେ, ବ୍ୟତିକ୍ରମ, ସନ୍ଦେହର କୁହୁଡ଼ି" ଗଳ୍ପଗୁଡ଼ିକୁ ଏକଶ୍ରେଣୀ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ଯେଉଁଥିରେ ପ୍ରୀତି ଓ ପ୍ରେମର ନମୁନା ଚୁମ୍ବନରେ ଆରମ୍ଭ ହୁଏ । ମାତ୍ର ପରିଣତି ଘୃଣା ଓ ବିଚ୍ଛେଦ ଭିତରେ ଯାଏ ।

"ଅସମାପ୍ତ କବିତା" ଶିଳ୍ପୀର ଯୌନ ଚେତନାର ତୀବ୍ରତା ଭିତରେ ବନ୍ଦୀ ହୋଇ ଶିଳ୍ପୀ ଚେତନାକୁ ବିନଷ୍ଟ କରେ ।

ମୋଟାମୋଟି ଭାବରେ ଦେଖିଲେ ଶ୍ରୀ ପ୍ରମୋଦ ପଣ୍ଡାଙ୍କ ଦ୍ୱାରା ଲିଖିତ ପୁସ୍ତକଟି ସୁରୁଚିଯୁକ୍ତ ଏବଂ ଅନେକ ଭାବନା ମନରେ ଉଦ୍ରେକ କରାଏ । ଗଳ୍ପଗୁଡ଼ିକ ପାଠକ ମନରେ ଶାଣିତ ଆଘାତ ହାଣେ । କେତେଗୁଡ଼ିଏ ଏକାପରି ଗଳ୍ପ ପାଠକ ମନରେ ଶୂନ୍ୟତା ସୃଷ୍ଟି କରିବାରେ ସାହାଯ୍ୟ କରେ ।

# ସାକ୍ଷର ଦୀପ : ସର୍ବଜନୀନ ଆବଶ୍ୟକ

ଆମ ସ୍ୱାଧୀନତାର ୫୦ ବର୍ଷ ପୂରିବାକୁ ହେଲା । ଏବର୍ଷ ଆମେ ଆମର ସୁବର୍ଣ୍ଣ ଜୟନ୍ତୀ ବର୍ଷ ପାଳନ କରିବୁ । ଗୋଟିଏ ଜାତି ପକ୍ଷରେ ଏହି ପଚାଶ ବର୍ଷ ଏକ ସ୍ୱଳ୍ପ ସମୟ ନୁହେଁ । କିନ୍ତୁ ଭାରତ ବର୍ତ୍ତମାନ ଏକ ସନ୍ଧିକ୍ଷଣରେ ଉପସ୍ଥିତ । ପଚାଶ ବର୍ଷ ତଳେ ଯେତେବେଳେ ଆମେ ସ୍ୱାଧୀନତା ଲଭିକଲୁ, ସେତେବେଳେ ସୂର୍ଯ୍ୟ ଅସ୍ତ ନ ହେଉଥିବା ଶକ୍ତ ବ୍ରିଟିଶ ସାମ୍ରାଜ୍ୟବାଦ ଆମ ନିକଟରେ ମଥାନତ କରି ଚାଲି ଯାଇଥିଲା । ବିନା ରକ୍ତପାତରେ ଅହିଂସା ସଂଗ୍ରାମର ଫଳ ଆମ ନିକଟରେ ମିଳିଥିଲା । ସମଗ୍ର ବିଶ୍ୱ ଇତିହାସରେ ଏହା ବିଶେଷତ୍ୱ ରଖେ । ତଥାପି ଚାରିଆଡ଼େ ବିଶୃଙ୍ଖଳା, ଅରାଜକତା । ମୂଲ୍ୟବୋଧର ପିରାମିଡ଼୍ ଭାଙ୍ଗିଯିବାରେ ଲାଗିଛି । ଯେଉଁ ଦେଶରେ ଅପର୍ଯ୍ୟାପ୍ତ ପରିମାଣରେ ଖଣିଜ ପଦାର୍ଥ, ପ୍ରାକୃତିକ ସମ୍ପଦ, ସେହି ଦେଶରେ ଘୋର ଦାରିଦ୍ର୍ୟ । ଧନୀ, ଥିଲାବାଲା ଲୋକମାନେ ଦରିଦ୍ର ଓ ଗରିବମାନଙ୍କୁ ନିଷ୍ପେଷିତ ଓ ନିର୍ଯ୍ୟାତିତ କରିବାରେ ସତତ ଚେଷ୍ଟିତ । ନାରୀ ଅସହାୟା, ଦୁର୍ନୀତି ସର୍ବବ୍ୟାପୀ । ହିଂସା ଚାରିଆଡ଼େ ବ୍ୟାପି ଯାଇ ବହୁ ଜୀବନ ନେବାରେ ଲାଗିଛି । ମନରେ ପ୍ରଶ୍ନ ଉଠୁଛି, ଏ ଭାରତ ରହିବ ତ ?

ଏ ଯୁଗର ମୂଳଆଧାର ହେଉଛି ଗଣତନ୍ତ୍ର ଏବଂ ଭାରତ ସବୁଠାରୁ ବଡ଼ ଗଣତନ୍ତ୍ର ରାଷ୍ଟ୍ର । ବିଶ୍ୱର ସର୍ବବୃହତ୍ ଏହି ଗଣତାନ୍ତ୍ରିକ ରାଷ୍ଟ୍ରର ଦାୟିତ୍ୱ ମଧ୍ୟ ସବୁଠାରୁ ବେଶୀ । କିନ୍ତୁ ସ୍ୱାଧୀନତାଲାଭ ପରଠାରୁ ଆମେ ଆମ ଦେଶ ସମ୍ପର୍କରେ ଭାବିବା କଥା ଭୁଲିଯାଇଛେ । ଆମେ କେବଳ ଚିତ୍କାର କରୁଛୁ, କେବଳ ଗଜର ଗଜର ହେବାରେ ଲାଗିଛୁ । ଆମେ ଆଦୌ ଭାବୁନାହୁଁ ।

ଦେଶ ସ୍ୱାଧୀନତା ପରେ ଯେ ପ୍ରଗତି ହାସଲ ନ କରିଛି ତାହା ନୁହେଁ । କିନ୍ତୁ କିନ୍ତୁ ଯେଉଁପରି ପ୍ରଗତି ହେବା କଥା ତାହା ହୋଇପାରିନି । ଦେଶ କଥା ସମସ୍ତେ ଭାବନ୍ତି ନାହିଁ । ଭାବନ୍ତି କେତେକ ମୁଷ୍ଟିମେୟ ଦେଶପ୍ରେମୀ ; ଯେଉଁମାନେ ତ୍ୟାଗ ଓ ସେବାରେ ଉଦ୍‌ବୁଦ୍ଧ । ସେମାନେ ରାଜନୀତି, ଶାସନ ଓ ସମାଜସେବା କ୍ଷେତ୍ରରେ ରହିଛନ୍ତି ।

ଆମେ ଏକ ପୁଲିସ୍ ଶାସନ ବ୍ୟବସ୍ଥାରୁ ଏକ ସ୍ୱାଧୀନ ଓ ମୁକ୍ତ ବ୍ୟବସ୍ଥା ମଧ୍ୟକୁ, ଏକ ଜନକଲ୍ୟାଣ ରାଷ୍ଟ୍ରକୁ ପ୍ରବେଶ କଲେ । ଆମ ଦେଶ ଲୋକମାନଙ୍କର ବହୁ ଅଦମିତ ଇଚ୍ଛାକୁ ପୂର୍ଣ୍ଣ କରିବାକୁ, ଆଶା ଆକାଂକ୍ଷାକୁ ଫଳବତୀ କରିବାକୁ ହେବ । ଶାନ୍ତିପୂର୍ଣ୍ଣ

ଭାବରେ କପରି ସାମାଜିକ ସ୍ତରରେ ଦେଶର ପୁନର୍ଗଠନ କରାଯାଇପାରିବ ଏବଂ ତାହାର ପରିବର୍ତ୍ତନରେ ବୈପ୍ଲବିକ ବ୍ୟାପ୍ତି ରହିବ, ସେଥିରେ ଲାଗିବା ଦରକାର ।

ମହାଭାରତରେ କୁନ୍ତୀ ତାଙ୍କର ପୁଅକୁ କହିଲେ— "ମୁହୂର୍ତ୍ତିମ୍ ଜ୍ୱଳିତମ୍ ଶ୍ରେୟୋ ; ନା ତୁ ଧୂମାୟିତ ଚିରମ୍" । ମୁହୂର୍ତ୍ତିକ ବା କ୍ଷଣିକ ପାଇଁ ଜଳିବାରେ ଯେଉଁ ଆନନ୍ଦ, ତାହା ଚିରଦିନ ପାଇଁ ଧୂଆଁରେ ନାହିଁ । ଏହି କଥାଟିକୁ ବର୍ତ୍ତମାନ ଆମକୁ ଭାବିବାକୁ ହେବ ଓ ବିଚାର କରିବାକୁ ହେବ । ବିଚାର କରିବାକୁ ଗଲାବେଳେ ଇତିହାସର ପୃଷ୍ଠାକୁ ଓଲଟାଇବାକୁ ପଡ଼ିବ । ଇତିହାସ ପୃଷ୍ଠାକୁ ଲେଉଟାଇବାବେଳେ ଆମେ ଯେଉଁ ପରିସ୍ଥିତିରେ ସମ୍ମୁଖୀନ ହୋଇଥିଲୁ, ଯେପରି ସ୍ୱାଧୀନତାଲାଭ କଲୁ, ସେଥିରୁ ଶିକ୍ଷା କରିବାକୁ ହେବ । ସେହି ଭାବଧାରାକୁ ଗ୍ରହଣ କରିବାକୁ ପଡ଼ିବ । କେବଳ ଖବର ସଂଗ୍ରହ କଲେ ହେବନି ; ଭାବନାକୁ ଗ୍ରହଣ, ଏହା ଏପର୍ଯ୍ୟନ୍ତ ଆମ ଶିକ୍ଷା ବ୍ୟବସ୍ଥାରେ ହୋଇପାରିନି ନାହିଁ । ଆମର ଶିକ୍ଷା ବ୍ୟବସ୍ଥାକୁ ଲକ୍ଷ୍ୟ କଲେ ଅନୁମାନ ହୁଏ ଯେ, ଏହାର ଜାତୀୟ ଆଭିମୁଖ୍ୟ ସହିତ କୌଣସି ସମ୍ପର୍କ ନାହିଁ ।

ବିଗତ ଶତାବ୍ଦୀରେ ଶିକ୍ଷା ସମ୍ପର୍କରେ ମତ ଦେଇ ସ୍ୱାମୀ ବିବେକାନନ୍ଦ କହିଥିଲେ, "ଶିକ୍ଷା କ'ଣ ? ଏହା କ'ଣ କେବଳ ପୁସ୍ତକ ବିଦ୍ୟା ? ନା, ଏହା ବିଭିନ୍ନ ଜ୍ଞାନର ସମାହାର । ଯେଉଁ ତାଲିମ ଦ୍ୱାରା ଭାବ ଓ ଭାଷାକୁ ନିୟନ୍ତ୍ରଣକୁ ଅଣାଯାଏ, ତାହାକୁ ଶିକ୍ଷା କୁହାଯାଏ ।" ଯେଉଁ ଶିକ୍ଷା ସାଧାରଣ ଜନଗଣଙ୍କୁ ଜୀବନ ସଂଗ୍ରାମରେ ଯୁଝିବାରେ ସାହାଯ୍ୟକାରୀ ନ ହୁଏ, ଯାହା ଚରିତ୍ରବେତ୍ତା ଶକ୍ତିର ପରିପ୍ରକାଶ ନ କରେ, ହୃଦୟରେ ଦାନଶୀଳତା ଓ ଦୟାର୍ଦ୍ରତାର ଭାବନା ଜାଗ୍ରତ ନ ହୁଏ, ସିଂହ ସଦୃଶ ଶକ୍ତି ଉତ୍ପନ୍ନ ନ ହୁଏ, ଏହାକୁ ଶିକ୍ଷା କୁହାଯିବା ଉଚିତ ହେବ କି ?" "ଆମକୁ ସେହି ପ୍ରକାର ଶିକ୍ଷା ଦରକାର ; ଯାହାଦ୍ୱାରା ଚରିତ୍ର ଗଠନ ହୋଇପାରିବ, ମାନସିକ ଶକ୍ତି ବୃଦ୍ଧି ପାଇବ, ବୁଦ୍ଧିମତ୍ତା ବିକଶିତ ହେବ ଏବଂ ଯାହା ଫଳରେ ଜଣେ ନିଜ ଗୋଡ଼ରେ ଠିଆହୋଇପାରିବ ।"

ସ୍ୱାମୀଜୀଙ୍କର ଏ ବକ୍ତବ୍ୟକୁ ଆମେ ଅଳ୍ପଦିନ ମଧ୍ୟରେ ଭୁଲିଗଲୁ ଏବଂ ପ୍ରତ୍ୟେକେ ନିଜ ନିଜ ସ୍ୱାର୍ଥରେ ମାତିଗଲୁ । ଆମେ ପ୍ରତ୍ୟେକେ ଭାବିଲୁ ଯେ, ଅନ୍ୟ ଲୋକ ଦେଶାତ୍ମବୋଧ ଭାବନାରେ ବ୍ରତୀ ହୋଇ ଦେଶ ପାଇଁ କାମ କରିବ ; ଆମେ ଟିକିଏ ଟିକିଏ ନିଜ କଥା କରିନେଲେ ଭଲ ।

ଏହା ହିଁ ଆମର ବର୍ତ୍ତମାନର ଇତିହାସ । ଏହାର ଅର୍ଥ କ'ଣ ? ଏହାଦ୍ୱାରା ଆମର ମାନସିକ ବିଚାରରେ କୌଣସି ବିଭ୍ରାଟ ରହିଛି ।

ଆମକୁ ଏହି ମାନସିକ ସ୍ଥିତିରୁ ସଜାଡ଼ିବାକୁ ହେବ । ଆମ ଦେଶ ଏକ ବିରାଟ ଓ ବ୍ୟାପକ ଇତିହାସ । ୧୯୦ ବର୍ଷର ବ୍ରିଟିଶ ଶାସନର ସ୍ୱଳ୍ପ ସମୟକୁ ବାଦ୍ ଦେଲେ ଏ ଜାତି, ଏ ଦେଶ ଆଗେଇଚାଲିଛି । ଆମ ଆଗରେ ଅନେକ ସମସ୍ୟା, ଅନେକ ପ୍ରତିବନ୍ଧକ, ତାହା ଦୂର କରି ଆଗେଇବାକୁ ହେବ ଏବଂ ନିଜକୁ ନୂଆ ଭାବରେ ନୂଆ ଢଙ୍ଗରେ ପ୍ରକାଶ କରିବାକୁ ହେବ । ଅତୀତରେ ଆମେ ଜଣେ ରାଜା ଉପରେ ଭରସା ରଖୁଥିଲୁ । ଜଣେ ସମ୍ରାଟ୍, ଜଣେ ସେନାଧକ୍ଷଙ୍କୁ ଗୁହାରିଥିଲୁ । ଶାସନ ଲୋକମାନଙ୍କର ଚେତନାରେ ନ ଥିଲା । ବର୍ତ୍ତମାନ ସ୍ୱାଧୀନତା ପରେ ସେଥିରେ ପ୍ରଥମ କରି ଆମେ ପରିବର୍ତ୍ତନ ଦେଖିଲୁ । ଆମେ ଆମର ଶକ୍ତି ଓ ସାମର୍ଥ୍ୟ ଲୋକ-ମାନଙ୍କଠାରୁ ପାଇଲୁ । ସମ୍ବିଧାନର ପ୍ରଥମ ଅକ୍ଷର ହେଲା, "ଆମେ ଭାରତର ଜନଗଣ ।"

ଆମେ ଆମର ଶକ୍ତି, ସାମର୍ଥ୍ୟ, ବିଶ୍ୱାସ କୌଣସି ରାଜା, ସମ୍ରାଟଠାରୁ ନ ପାଇ ଭାରତର କୋଟି କୋଟି ଲୋକମାନଙ୍କଠାରୁ ପାଇଲୁ, ଯାହା ସେହିମାନଙ୍କର ଶକ୍ତି ଓ ସାମର୍ଥ୍ୟ ବୃଦ୍ଧିରେ ସହାୟକ ହେବ । ଏହା ହେଉଛି ଆମ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରକୃତି ଓ ବ୍ୟାପ୍ତି । ଏହା ହିଁ ଏକ ଅସାଧାରଣ ପରୀକ୍ଷା ।

ଏହି ଗଣତନ୍ତ୍ରକୁ ଆମେ କିପରି ରକ୍ଷା କରିପାରିବା । ଏଥିପାଇଁ ପ୍ରଥମେ ଆମକୁ ଶିକ୍ଷାକରିବାକୁ ହେବ ଯେ, ଆମେ ଆମ ମନ ଭିତରୁ ସାମନ୍ତବାଦୀ ମନୋବୃତ୍ତିକୁ ତ୍ୟାଗ କରି ଗଣତାନ୍ତ୍ରିକ ଦୃଷ୍ଟିଭଙ୍ଗୀ ଓ ବ୍ୟବହାର ଦେଖାଇବାକୁ ହେବ । ଦ୍ୱିତୀୟରେ ଆମକୁ ଏହି ରାଷ୍ଟ୍ର ଭିତରେ ରହି କାର୍ଯ୍ୟ କରିବାକୁ ହେବ ; ରାଷ୍ଟ୍ର ବାହାରେ ନୁହେଁ । ଫଳରେ ଏହି କାର୍ଯ୍ୟର ସଫଳତା ବା ବିଫଳତା ନିଜ ଉପରକୁ ନେଇହେବ ଏବଂ ଯାହା ଆମେ ଘୋଷଣା କରିବା, ତାକୁ ମଧ୍ୟ କାର୍ଯ୍ୟରେ ଲଗାଇପାରିବା ଏବଂ ତୃତୀୟରେ ଆମକୁ ଏକ ଶକ୍ତିଶାଳୀ ବ୍ୟକ୍ତିତ୍ୱରେ ଗଢ଼ି ଉଠିବାକୁ ହେବ ଯେଉଁଠାରେ ଆମର ପାରିବାରିକ ବିଚାରଧାରା ଜାତୀୟ ରାଜନୈତିକ ଚେତନାରେ ବଦଳିଯିବ ଓ ହେଇ ମଣିଷ କେବଳ ରାଷ୍ଟ୍ର ପାଇଁ ହିଁ ଚିନ୍ତା କରିବ ।

ତେଣୁ ଆମେ ଯେତେବେଳେ ଜଣେ ଜଣେ ନାଗରିକ, ନାଗରିକର ମୂଲ୍ୟବୋଧ ସ୍ୱାଧୀନତା ଓ ଦାୟିତ୍ୱବୋଧରେ ନ୍ୟସ୍ତ । ଆମେ ଜଣେ ନାଗରିକ ଭାବେ ଏ ଦେଶର ସମସ୍ୟା ଓ ତା'ର ସମାଧାନରେ ବ୍ୟାପ୍ତ ରହିବା ଦରକାର ।

ଭାରତକୁ ଉଠାଇବାକୁ ହେବ, ପୁନର୍ଗଠନ କରିବାକୁ ହେବ ; ମୂଲ୍ୟବୋଧକୁ ଜାଗ୍ରତ କରିବାକୁ ହେବ ଏବଂ ଯାହାକିଛି ଭାରତର ମୂଲ୍ୟବୋଧ କ୍ଷତିସାଧନ କରୁଛି ତାକୁ ଫିଙ୍ଗିଦେବାକୁ ହେବ ।

ଏହି ଚିନ୍ତିବା ଓ ଗଢ଼ିବାର ମୂଳମନ୍ତ୍ର ହେଉଛି ଶିକ୍ଷା । ସାର୍ବଜନୀନ ଶିକ୍ଷା । କାରଣ କେବଳ ଶିକ୍ଷା ହିଁ ଦେଶକୁ ଗଠନ କରିପାରିବ । ଜାତି ଗଠନ କେବଳ ମଣିଷ ଗଠନ ଓ ଚରିତ୍ର ଗଠନ ଯୋଗୁ ହିଁ ସମ୍ଭବ ହୋଇପାରିବ । ୧୮୯୪ ମସିହା ଜୁନ୍ ୨୦ ତାରିଖରେ ଜୁନାଗଡ଼ର ଦେୱାନଙ୍କୁ ଚିକାଗୋଠାରୁ ଏକ ପତ୍ରରେ ସ୍ୱାମୀ ବିବେକାନନ୍ଦ ଲେଖିଥିଲେ— "ପ୍ରକୃତରେ ଗଣ୍ଡ ପଲ୍ଲୀର କୁଟୀରରେ ବାସ କରେ, ଯେଉଁମାନେ ସେମାନଙ୍କର ମନୁଷ୍ୟତ୍ୱ, ସେମାନଙ୍କର ବ୍ୟକ୍ତିତ୍ୱକୁ ଭୁଲିଗଲେଣି । ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନମାନଙ୍କର ପାଦତଳେ ପିଷ୍ଟି ହୋଇଯାଇ ସେମାନେ ଭାବିବାକୁ ଲାଗିଲେଣି ଯେ; ସେମାନେ ସମସ୍ତଙ୍କ ପାଦତଳେ, ଯେଉଁମାନଙ୍କ ପାଖରେ ଟଙ୍କା ଅଛି ଷଷ୍ଠିହେବେ । ସେମାନଙ୍କର ହଜିଯାଇଥିବା ବ୍ୟକ୍ତିତ୍ୱକୁ ଫେରାଇ ଦେବାକୁ ହେବ ।"

ବର୍ତ୍ତମାନ ଭାରତର ଲୋକମାନେ, ଆମ୍ଭେମାନେ ଆମ ନିଜର ଶାସକ । ଗଣତନ୍ତ୍ର ଭିତ୍ତିଭୂମିରେ ଆମେ ସମସ୍ତେ ଟ୍ରଷ୍ଟିଭ କ୍ଷମତାର ଅଧିକାରୀ । ଦୀର୍ଘ ୫୦୦୦ ବର୍ଷରେ ଯାହା ଭାରତର ଲୋକମାନେ ପାଇ ନ ଥିଲେ, ତାହା ବର୍ତ୍ତମାନ ପାଇଛନ୍ତି । ନିଜକୁ ନିଜେ ଶାସନ କରିବାର ଅଧିକାର । ମୁକ୍ତ ସ୍ୱାଧୀନ ହେବା ବ୍ୟକ୍ତିତ୍ୱରେ ବିକାଶ ଲାଭ କରିପାରୁନ । ଏପରିକି ଆମର ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ଯେଉଁମାନେ ଆମର ରାଜନୀତି, ଶାସନ ବ୍ୟବସ୍ଥାରେ କାର୍ଯ୍ୟରତ ।

ପ୍ରତ୍ୟେକ ମଣିଷ ଭିତରେ ନିଜକୁ ମୁକ୍ତ ଓ ସ୍ୱାଧୀନ ଭାବ ଜାଗ୍ରତ କରି ଏ ଦେଶ ପାଇଁ ନିଜକୁ ଉତ୍ସର୍ଗ କରିବାକୁ ମନୋବୃତ୍ତି ସୃଷ୍ଟି କରିବାର ପ୍ରଥମ ଆବଶ୍ୟକତା ହେଉଛି ଶିକ୍ଷା । ପ୍ରାଥମିକ ଶିକ୍ଷାର ସାର୍ବଜନୀନ, ଜନଶିକ୍ଷାର ବ୍ୟାପକ ପ୍ରସାର, ଶିଶୁ ଶ୍ରମିକର ମୂଳୋତ୍ପାଟନ ପାଇଁ ଜନମତ ଜାଗ୍ରତ କରିବାକୁ ହେବ । ତେବେ ଯାଇ ମୁକ୍ତ ଓ ସ୍ୱାଧୀନ ଚେତନା ବ୍ୟକ୍ତି ମଧ୍ୟରେ ବିକଶିତ ହୋଇ ତାକୁ ଜଣେ ଉତ୍ତମ ନାଗରିକ ଭାବେ ଦେଶ ପ୍ରତି, ଜାତି ପ୍ରତି ତା'ର କର୍ତ୍ତବ୍ୟକୁ ଦେଖାଇ ଦେଇପାରିବ ।

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ବର୍ଷରେ ଏ ବିଷୟରେ ଚିନ୍ତା କରିବା ଆମର କର୍ତ୍ତବ୍ୟ ନୁହେଁ କି ?

●

# ସାହିତ୍ୟର ଭବିଷ୍ୟତ

ସାଂପ୍ରତିକ ସମୟରେ ଶିକ୍ଷିତବର୍ଗଙ୍କର ସଂଖ୍ୟା ବେଶୀ । ପ୍ରତ୍ୟେକ ବର୍ଷ ଅନେକ ଯୁବକ ଯୁବତୀ ବିଶ୍ୱବିଦ୍ୟାଳୟରୁ ଉଚ୍ଚତମ ଡିଗ୍ରୀ ହାସଲ କରିବାରେ ସଫଳ ହେଉଛନ୍ତି । କିନ୍ତୁ ଏହା ସତ୍ତ୍ୱେ ଯୁବପିଢ଼ି ସିନେମା ଅପେକ୍ଷା ପୁସ୍ତକକୁ, ଭାବନା ଅପେକ୍ଷା ବିବେକକୁ, ବସ୍ତୁ ଅପେକ୍ଷା ଶିଳ୍ପକୁ ଏବଂ ଉଚ୍ଚତମ ସଂସ୍କୃତି ବିଷୟରେ ଖୁବ୍ କମ୍ ଚିନ୍ତା କରୁଛନ୍ତି ଏହାଫଳରେ ଦେଖାଯାଉଛି ଯେ ସେମାନେ କ୍ରମଶଃ ଏପରି ଅଭ୍ୟସ୍ତ ହେବାରେ ଲାଗିଛନ୍ତି । ଯେତେବେଳେ ସାହିତ୍ୟର କୌଣସି ଭବିଷ୍ୟତ ରହିବ କି ନାହିଁ ସନ୍ଦେହ । ତଥାପି ଅନେକ ପୁସ୍ତକ ଛପାହେବାରେ ଲାଗିଛି ଓ ବହୁ ଲୋକ ବହି ମଧ୍ୟ ପଢ଼ୁଛନ୍ତି । ଓଡ଼ିଆ ଭାଷାରେ ବିଭିନ୍ନ ବିଷୟରେ ଅନେକ ପୁସ୍ତକ । ଏହି ପୁସ୍ତକରେ ଭାଷା ପରିବର୍ତ୍ତନ ହେଉଥିବାର ପରିଲକ୍ଷିତ ହେଉଛି । ନୈତିକ ବିଷୟ ଉପରେ ପ୍ରଶ୍ନ ହେଉଛି କିନ୍ତୁ ନୈତିକ ପ୍ରଶ୍ନର ସମାଧାନ ନାହିଁ । ବିଚାରଧାରାରେ ଶିଥିଳତା ଦେଖାଦେଇ ସଂଶୟବାଦ, ସନ୍ଦେହ, ନିରାଶା, ଯାନ୍ତ୍ରିକତା, ଏକଦେଶଦର୍ଶୀ ବିଚାରଧାରା ତା'ର ସ୍ଥାନ ମଣ୍ଡନ କରୁଛି । ଓଡ଼ିଆ ସାହିତ୍ୟରେ ରାଧାନାଥ, ଉପେନ୍ଦ୍ରଭଞ୍ଜ, ଗଙ୍ଗାଧର, ବଳଦେବ, ଅଭିମନ୍ୟୁ, ଫକୀରମୋହନ ପ୍ରଭୃତି ମହାରଥୀମାନେ ଆଉ ପରିଦୃଶ୍ୟ ହେଉ ନାହାନ୍ତି । ମହାରଥୀମାନଙ୍କର ସମୟ ଶେଷ ହୋଇ ଯାଇଛି ବୋଲି କୁହାଯାଉଛି । ତଥାପି ଗଳ୍ପ, ଉପନ୍ୟାସ, ଜୀବନ, ଆଲୋଚନା ଇତ୍ୟାଦିରେ ସମୃଦ୍ଧ ଓଡ଼ିଆ ସାହିତ୍ୟ ଭରପୁର ହେବାରେ ଲାଗିଛି ।

ଯେଉଁମାନେ ସାହିତ୍ୟ ଆଲୋଚନା କରୁଛନ୍ତି, ସେମାନଙ୍କର ରୁଚି ସେହି ପୁରୁଣାକାଳିଆ । ସେମାନେ ନୂତନ ଲେଖକମାନଙ୍କର ପ୍ରତିଭା ସମ୍ପର୍କରେ ସଚେତନ ଥିବାପରି ବୋଧ ହେଉନାହାନ୍ତି କିମ୍ବା ନିଜ ନିଜର ବିଚାରଧାରା ଖୋଜିବାରେ ବ୍ୟସ୍ତ ଓ ନିଜର ବିଚାରଧାରା ଅନୁଯାୟୀ ମୂଲ୍ୟାଙ୍କନ କରିବାରେ ପ୍ରୟତ୍ନ କରନ୍ତି । ସାହିତ୍ୟକୁ ଭଲଭାବେ ଜାଣିବାକୁ, ଚିହ୍ନିବାକୁ ଓ ବିଚାର କରିବାକୁ ଆଲୋଚନାର ଆବଶ୍ୟକତା ରହିଛି । କାରଣ ଆଲୋଚକ କେବଳ କହିପାରେ ନୂତନତା କ'ଣ ? ପରିବର୍ତ୍ତନ କିପରି ହେଉଛି ? ସମାଜରେ ଯେଉଁ ଯେଉଁ ଘଟଣାମାନ ଘଟି ସାମାଜିକ ଚେତନାର ସଂବେଦନା, ନୈତିକତାକୁ ଲୋପ କରିଦେବାର ପ୍ରଚେଷ୍ଟା ଚାଲିଛି ତାକୁ ଦେଖାଇ-ଦେବା, ଚିହ୍ନାଇଦେବା ଆଲୋଚନାର ମହତ୍ତ୍ୱପୂର୍ଣ୍ଣଦିଗ । ଆଲୋଚକ ତୁଳନାତ୍ମକ ବିଶ୍ଳେଷଣ କରି ସାଧାରଣ ପାଠକମାନଙ୍କୁ ନୂତନତା ଭିତରେ ଥିବା ଅମାପ

ସମ୍ଭାବନାକୁ ଚିହ୍ନିତ କରନ୍ତି । ପ୍ରାଚୀନ, ପ୍ରବୀଣ ଓ ନବୀନମାନଙ୍କ ମଧ୍ୟରେ ଭିନ୍ନତା, ବିବିଧତା, ସମାନତା ଓ ସାମଞ୍ଜସ୍ୟତାର ଦିଗନିର୍ଣ୍ଣୟରେ ସହାୟକ ହୁଅନ୍ତି । ଫଳରେ ପାଠକ ମନରେ ଭାବନାର ସୀମା ବ୍ୟାପ୍ତ ହୁଏ, ସେ ତାହାକୁ ନିଜ ଅନୁଭୂତିରେ ଗ୍ରହଣକରି ବିକଶିତ କରାଇବାର ପ୍ରଯତ୍ନ କରନ୍ତି ଏବଂ ବାରମ୍ବାର ପରିବର୍ତ୍ତିତ ହୋଇ ଚାଲିଥିବା ସମସ୍ତ ସହିତ ଜୀବନକୁ ମୋଡ଼ ଦେଇ ସହିତ ସାମାଜିକ ଭାବନାକୁ ସାର୍ଥକ ଓ ସମର୍ଥଭାବେ ପ୍ରସ୍ଫୁଟିତ ଓ ପଲ୍ଲବିତ କରନ୍ତି ।

ସାଧାରଣ ପାଠକ ଗୂଢ଼ୀବାଦୀ । ସାହିତ୍ୟ ପ୍ରତି ପାଠକର ଶ୍ରଦ୍ଧା ଓ ଅଭିରୁଚି କ୍ଷଣିକ । କାରଣ ସାହିତ୍ୟ ଯେତେବେଳେ ପାଠକକୁ ତା'ର ଘରକଡ଼ରେ ଘଟୁଥିବା ଜୀବନ ପ୍ରତି ସଚେତନ କରାଏ, ଯାହାକୁ ସେ ଦେଖି ମଧ୍ୟ ଦେଖି ନଥାଏ, ସେ ତାହା ପ୍ରତି ଆକୃଷ୍ଟ ହୁଏ, ଆକର୍ଷିତ ହୁଏ । ସେ ଆଖି ମେଲାକରି ଦେଖେ ରାଜନୈତିକ ନେତାର କ୍ଷମତା ଦଲାଲି, ବେପାରୀର ଶୋଷଣ ଓ ବେତନ ଭୋଗୀ କର୍ମଚାରୀର ବିଳାସ ଓ ଆଳସ୍ୟ ଯୋଗୁ ସଢ଼ୁଥିବା ନିଃସହାୟ ମଣିଷ । ସେ ଦେଖେ ସବୁଲୋକ ଏକ ପ୍ରତିଯୋଗିତାରେ ଦୌଡ଼ୁଛନ୍ତି ଯେପରି ମୂଷାମାନେ ଦଳ ଦଳ ହୋଇ ଦୌଡ଼ନ୍ତି ଏବଂ କିଛି ନା କିଛି ପାଇଯିବାର ବ୍ୟାକୁଳତାରେ ଅସ୍ତବ୍ୟସ୍ତ । ସେ ଆହୁରି ମଧ୍ୟ ଦେଖେ ବିଶାଳ ନୀଳାଭ ଆକାଶରେ ଦଳ ଦଳ ହୋଇ ଉଡ଼ିଯାଉଥିବା ପକ୍ଷୀସମୂହ ଧରଣୀରାଣୀ ଉପରେ ଝୁଲି ହୋଇଥିବା ବାଦଲ, ବହିଯାଉଥିବା ସୁଶୀତଳ ପବନ ସ୍ପର୍ଶରେ ଖେଳି ଉଠୁଥିବା ଫୁଲର ପାଖୁଡ଼ା, ସମୁଦ୍ରର ଘୋ ଘୋ ଗର୍ଜ୍ଜନ ସହିତ କୂଳରେ ଅନିର୍ଦ୍ଦିଷ୍ଟ ଭାବରେ ବିଚରଣ କରୁଥିବା ଦଳ ଦଳ କଙ୍କଡ଼ା ଓ ମଣିଷ ପାଦର ଶବ୍ଦରେ ତଡ଼ିତ୍ ବେଗରେ ଗର୍ତ୍ତ ମଧ୍ୟରେ ଲୁଚି ଯାଉଥିବାର ପ୍ରୟାସ, ହିମାଳୟର ଉଚ୍ଚ ଶୃଙ୍ଗ ଉପରେ ଆଚ୍ଛାଦିତ ବରଫର ମନୋରମ ଶୋଭା । ପ୍ରକୃତିର ଶାନ୍ତ ସରଳ ପ୍ରଫୁଲ୍ଲିତ ରୂପ କେଉଁଠି ତ କେଉଁଠି ରୁକ୍ଷ, ସବୁ ଦେଖି ପୁଣି ସେ ଭୁଲିଯାଏ । ସାହିତ୍ୟରେ ଆଧୁନିକତାର ପ୍ରବେଶରୁ ଉତ୍ପନ୍ନ ହେଉଥିବା ବ୍ୟକ୍ତି ଜୀବନର ଅସହାୟତା, ଜୀବନବୋଧରୁ ବିଚ୍ଛିନ୍ନତା, ବୌଦ୍ଧିକତା ପ୍ରତି ବିଦ୍ରୋହ ଇତ୍ୟାଦି ନବ୍ୟ ଉପନିବେଶବାଦ ଚିନ୍ତାଧାରାର ପ୍ରଭାବ ଏବଂ ଏହା କ୍ରମଶଃ ସାହିତ୍ୟରେ ଯଥାର୍ଥବାଦର ଭୂମିକାକୁ ଲୋପକରି ମାନବୀୟ ଭାବରାଶିକୁ ବ୍ୟବସାୟୀକରଣ କରି ଅନ୍ଧଗଳି ଭିତରେ ପୂରାଇଦେବାର ଚେଷ୍ଟା ଚାଲିଛି ବୋଲି କୁହାଯାଉଛି । ଆଧୁନିକତା ଇତିହାସର ଆବଶ୍ୟକତା । ନୂତନ ସମସ୍ୟାମାନଙ୍କୁ ଜନ୍ମଦେବା, ଜୀବନକୁ ଅଧିକ ଜଟିଳ କରି ସୃଷ୍ଟି କରିବା ଆଧୁନିକତାର ସ୍ୱରୂପ ହେବା ବେଳେ ଏହା ଯେ ଅବଶ୍ୟମ୍ଭାବୀ ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ମାନବ ଜାତିର ଭାଗ୍ୟ ଏହା ସହିତ ଯୋଡ଼ି ହୋଇ ରହିଛି ।

ସମସ୍ତ ପରିବର୍ତ୍ତନର ଧାରାକୁ ନିଜେ ସୃଷ୍ଟିକରେ । ଏହାକୁ ପାଶ୍ଚାତ୍ୟର ପ୍ରଭାବ କହି ମୁହଁ ବୁଲାଇ ଦେବା ଏବଂ ଆଧୁନିକତା ନାମରେ ନୂତନତାକୁ ଗ୍ରହଣ ନ କରିବାର ସିଦ୍ଧାନ୍ତ ସାହିତ୍ୟର ଅଭିବୃଦ୍ଧିର ପରିପନ୍ଥୀ । ଯେତେବେଳେ ଭାରତରେ ପୁନର୍ଜାଗରଣ ଦେଖାଗଲା, ତାହା ଅବଶ୍ୟ ସେତେବେଳର ବୁର୍ଜୁଆ ଶ୍ରେଣୀର ସ୍ୱାର୍ଥକୁ ସଂରକ୍ଷିତ କରିବା ପାଇଁ ନିର୍ଦ୍ଦିଷ୍ଟ ହୋଇଥିଲା କିନ୍ତୁ ତାହା ସମ୍ପୂର୍ଣ୍ଣ ହୋଇ ପାରିଲା ନାହିଁ । ପାଶ୍ଚାତ୍ୟ ପୁଞ୍ଜିବାଦର ପ୍ରଭାବ ଭାରତର ଜନଜୀବନ ଉପରେ ଯେଉଁ ପ୍ରଭାବ ପକାଇଲା, ସେଥିରେ ମଣିଷ ଯନ୍ତ୍ର ଉପରେ ବିଶ୍ୱାସ ସ୍ଥାପନ କଲା, ଜଙ୍ଗଲକାଟି ନଗର ସ୍ଥାପନ କଲା ଏବଂ ପ୍ରଗାଢ଼ ଅର୍ଥ କ୍ଷମତା ରାଜନୀତି ପ୍ରତି ଆକୃଷ୍ଟ ହେଲା । କିନ୍ତୁ ସେ ସମଗ୍ର ମନୁଷ୍ୟ ସଂପର୍କରେ ଭାବିବାକୁ ଚେଷ୍ଟା ନ କରି ନିଜର ବିଚାରଧାରାରେ ହତୋତ୍ସାହ ଭାବନାକୁ ପ୍ରବେଶ କରାଇଲା । ମନୁଷ୍ୟ ଭିତରେ ଥିବା ପଶୁତ୍ୱକୁ ଲୋପ କରିବା ପରିବର୍ତ୍ତେ ତାହାର ଅଭିବୃଦ୍ଧିରେ ସମଗ୍ର ମାନବ ସମାଜକୁ ଏକ ମରୁଭୂମିରେ ପରିଣତ କରିବାର ଚେଷ୍ଟା କଲା । ମାନବତା ଓ ମାନବୀୟତାର ସ୍ଥାନ ନେଲା ପଶୁତ୍ୱ ଓ ବର୍ବରତା । ତେଣୁ ବର୍ତ୍ତମାନର ଆବଶ୍ୟକତା ବିବେକହୀନ ଆଧୁନିକତା ନୁହେଁ । ସାହିତ୍ୟର ଉଦ୍ଦେଶ୍ୟ ଦୁନିଆଁକୁ ପରିବର୍ତ୍ତନ କରିବା ନୁହେଁ ବରଂ ଏହାକୁ ବୁଝିବା ।

ସାହିତ୍ୟ ବିପ୍ଳବ ସୃଷ୍ଟି କରେନା, ବରଂ ବିପ୍ଳବ ପାଇଁ ମନୁଷ୍ୟକୁ ପ୍ରସ୍ତୁତ କରେ । ମନୁଷ୍ୟ ମଧ୍ୟରେ ଜାଗରଣ ସୃଷ୍ଟି କରାଏ । ନୂଆ ବାଟେ ପ୍ରତ୍ୟେକ ବସ୍ତୁକୁ ଦେଖିବାର ଉତ୍ସବତା ଓ ଜିଜ୍ଞାସା ଜାଗ୍ରତ କରାଏ । ସାହିତ୍ୟରେ ରାଜନୀତି, ଧର୍ମ, ରହସ୍ୟବାଦ, ଦାର୍ଶନିକ ବିଚାରଧାରା ରହିପାରେ କିନ୍ତୁ କୌଣସି ଏକ ନିର୍ଦ୍ଦିଷ୍ଟ ଦର୍ଶନ ବା ବିଚାରଧାରାର ହତିଆର ହୋଇପାରେନା । ସାହିତ୍ୟ ବିଶ୍ୱେ ସୌନ୍ଦର୍ଯ୍ୟବୋଧ ଖୋଜିବାରେ ଏହି ଖୋଜିବା ହେଉଛି ସାହିତ୍ୟର ସାର୍ବଭୌମିକତା, ମାନବିକ ସମ୍ବେଦନଶୀଳତା । ଓଡ଼ିଆ ସାହିତ୍ୟରେ ଏ ପ୍ରକାର ବିଚାର ନେଇ ସାହିତ୍ୟ ରଚନା କରିବା ବେଳେ ଭାଷା ପ୍ରତି ଦୃଷ୍ଟିଦେବାକୁ ହୋଇଥାଏ । ଭାଷା ଯେତେ ଶକ୍ତିଶାଳୀ ହେବ, ଅନ୍ତର୍ଦୃଷ୍ଟି ସେତେ ପରିଷ୍କାର ଜଣାପଡ଼ିବ । ଭାଷା ହିଁ କେବଳ ବ୍ୟକ୍ତିତ୍ୱର ବିକାଶ, ସାଂସ୍କୃତିକ ଚେତନା ଓ ମୂଲ୍ୟବୋଧର ସୁରକ୍ଷାରେ ସହାୟକ ହେବ । କାରଣ ଏହା ଭାରତୀୟ ଜନଜୀବନ ମଧ୍ୟରେ ଭାରତୀୟ ଚେତନା, ଭାରତୀୟ ବ୍ୟକ୍ତିତ୍ୱ ଓ ଭାରତୀୟ ଦୃଷ୍ଟିକୋଣ ବିକାଶ କରିବାରେ ସହାୟକ ହୋଇପାରିବ ।

ଏ ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟର ଭବିଷ୍ୟତ ରୂପରେଖ କ'ଣ ହେବ ? କିପରି ଭାବରେ ଆଧୁନିକତା ଭାଷା ସାହିତ୍ୟକୁ ସମୃଦ୍ଧ କରିବ, ତାହା ଲେଖକ, ଆଲୋଚନା ଓ ପାଠକମାନଙ୍କର ସମ୍ମିଳିତ ଭାବନା ଓ ଚେତନାର ବ୍ୟାପକତା ଉପରେ ନିର୍ଭର କରେ ।

# ଓଡ଼ିଶାରେ ପ୍ରକାଶନ ସମସ୍ୟା

ଓଡ଼ିଶାରେ ପ୍ରକାଶନ ସମସ୍ୟା ସଂପର୍କରେ ଆଲୋଚନା କଲାବେଳେ କେତେ-ଗୁଡ଼ିଏ ବିଷୟ ମନକୁ ଆସେ । ପ୍ରଥମତଃ ଜଳବାୟୁ ଓ ଭୌଗୋଳିକ ଦୃଷ୍ଟିକୋଣରୁ ସାଧାରଣ ଲୋକମାନେ କଥୋପକଥନ ଉପରେ ବିଶେଷ ଗୁରୁତ୍ୱ ଦେଇ ପଢ଼ିବା ପ୍ରତି ଗୁରୁତ୍ୱ ଦେଇନଥାନ୍ତି । ଓଡ଼ିଶାରେ ଏହି କଥିତ ପରମ୍ପରା ଫଳରେ ପ୍ରାଥମିକ ସ୍ତରରୁ ପଠନ ପ୍ରତି ଆଗ୍ରହ ସୃଷ୍ଟି ହୋଇ ନଥାଏ । ତେଣୁ ପଠନ ପ୍ରତି ଆଗ୍ରହର ଅଭାବକୁ ଦୂର କରିବା ପାଇଁ ପ୍ରଥମରୁ ଶିଶୁ ସାହିତ୍ୟ ଉପରେ ଗୁରୁତ୍ୱ ଦେବାର ଆବଶ୍ୟକତା ଅଧିକ ।

ଓଡ଼ିଶାରେ ଶିଶୁ ସାହିତ୍ୟର ଅବସ୍ଥା କ'ଣ ? ଯେଉଁମାନେ ପ୍ରତିଷ୍ଠିତ ଲେଖକ ବା କବି, ସେମାନେ ଏଥିପ୍ରତି ସେତେଦୂର ସଜାଗ ଥିବାର ଅନୁମାନ ହୁଏନାହିଁ । କୋମଳମତି କିଶୋର କିଶୋରୀଙ୍କୁ ପଢ଼ିବା ପ୍ରତି ଆଗ୍ରହ ସୃଷ୍ଟି କରିବାକୁ ହେଲେ ବିଭିନ୍ନ ବିଷୟ ସମ୍ବଳିତ ପୁସ୍ତକର ପ୍ରକାଶ ହେବା ଆବଶ୍ୟକ । ଉଦାହରଣ ସ୍ୱରୂପ ଦେଖାଯାଏ ଯେ, 'ଜହ୍ନମାମୁଁ' ବା 'ଚନ୍ଦମାମା' ପ୍ରକାଶିତ ହୋଇ ଯେପରି ବହୁଳ ବିକ୍ରି ହେଉଛି, ଓଡ଼ିଶାରେ କୌଣସି ଶିଶୁ ପତ୍ରିକା ସେପରି ସଫଳତା ହାସଲ କରିପାରିନି । ଯଦିଓ ଜହ୍ନମାମୁଁ ଶିଶୁମାନଙ୍କ ପାଇଁ ସେତେ ବେଶୀ ଉପଯୋଗୀ ନୁହେଁ । ପିଲାମାନଙ୍କୁ ଦେବାପାଇଁ ଆମ ପାଖରେ ସେପରି ପ୍ରଚେଷ୍ଟା ନାହିଁ । ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ 'ଶିଶୁଲେଖା' ସମୁଦ୍ରକୁ ଶଙ୍ଖେ । ଶିଶୁ ଅବସ୍ଥାରୁ ପଠନ ପ୍ରତି ଅନାଗ୍ରହ ହେତୁ ଓଡ଼ିଶାରେ ପାଠକ ସଂଖ୍ୟା ସୀମିତ । ଏହି ପାଠକ ସଂଖ୍ୟା ପୁନଶ୍ଚ ଭୌଗୋଳିକ ଦୃଷ୍ଟିକୋଣରୁ ତେଲୁଗୁ, ହିନ୍ଦୀ ଓ ବଙ୍ଗଳା ସାହିତ୍ୟ ଦ୍ୱାରା ବହୁ ଭାବରେ ପ୍ରଭାବିତ ।

ଆମର ପଡ଼ୋଶୀ ରାଜ୍ୟ ଆନ୍ଧ୍ରପ୍ରଦେଶ, ପଶ୍ଚିମବଙ୍ଗର ସାହିତ୍ୟ ଓ ପ୍ରକାଶନ କ୍ଷେତ୍ର ବେଶ୍ ବିକଶିତ । ତେଣୁ ଓଡ଼ିଶାର ବହୁ ଅଞ୍ଚଳରେ ତେଲୁଗୁ ପୁସ୍ତକ, ହିନ୍ଦୀ ପୁସ୍ତକ ଓ ବଙ୍ଗଳା ପୁସ୍ତକର ପାଠକ ବହୁଳ ଭାବରେ ସେହି ପୁସ୍ତକମାନଙ୍କୁ ପଢ଼ିବା ବେଳେ ଓଡ଼ିଆ ପୁସ୍ତକ ପ୍ରତି ଗୁରୁତ୍ୱ ଦେଇ ପଢ଼ନ୍ତି ନାହିଁ । ଏହିସବୁ ଭାଷାରେ ବିଭିନ୍ନ ବିଷୟର ପୁସ୍ତକ ଏପରିକି ଶସ୍ତା ପୁସ୍ତକର ବ୍ୟାପକ ପ୍ରକାଶନ ଦେଖିବାକୁ ମିଳୁଛି । ଜଣେ ପାଠକ ଅତି ବେଶୀ ହେଲେ ଚାରି ଘଣ୍ଟା ପଢ଼ିବାରେ ସମୟ ଦେଇପାରେ ।

ତାହା ଏହି ସୀମିତ ପଠନ ବେଳେ ଜଣେ ସଚେତନ ପାଠକ ଯେଉଁ କେତେଗୁଡ଼ିଏ ବହି ପଢ଼ିବ, ସେଥିପାଇଁ ତା' ଆଗରେ ବହିର ମୂଲ୍ୟାୟନ ବା ପରିଚିତି ରହିବା ଆବଶ୍ୟକ । ଏ କ୍ଷେତ୍ରରେ ସମାଲୋଚନା ବା ଆଲୋଚନାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପୁସ୍ତକ ପଢ଼ିବାର ଉଦ୍ଦେଶ୍ୟ କ'ଣ ? ନିଜର ସଂସ୍କୃତି ସହିତ ପରିଚିତ ହେବା, ସଭ୍ୟତାର ପରିବର୍ତ୍ତନ ହୁଏ । ସଭ୍ୟତାର ପରିବର୍ତ୍ତନ ଆମେ ବିଜ୍ଞାନର ବ୍ୟାପକ ପ୍ରସାର ଫଳରେ ଟି.ଭି. ଓ ଅନ୍ୟାନ୍ୟ ଗଣମାଧ୍ୟମ ଜରିଆରେ ଦେଖିବାକୁ ଓ ଜାଣିବାକୁ ପାଉଛେ । ଭାରତୀୟ ସଂସ୍କୃତିର ଯେଉଁ ମହାନ ପରମ୍ପରା ତାକୁ ଅବଗାହନ କରିବାକୁ ହେଲେ ଆମକୁ ପୁସ୍ତକ ପଠନ ଉପରେ ଗୁରୁତ୍ୱ ଦେବାକୁ ହେବ । ସେଥିପାଇଁ ପାଠକମାନଙ୍କ ମଧ୍ୟରେ ସାହିତ୍ୟ ପ୍ରତି ରୁଚି ( literary taste ) ସୃଷ୍ଟି କରିବାକୁ ହେବ । ଆଧୁନିକ ସମୟରେ ଲୋକମାନଙ୍କ ମଧ୍ୟରେ ସାହିତ୍ୟ ପ୍ରତି ଆଗ୍ରହ ସୃଷ୍ଟି ନ ହେବାର କାରଣ ଭିତରେ ସଂସ୍କୃତି ସଂପର୍କରେ ଆଲୋଚନା କରିବା ପାଇଁ ପରମ୍ପରାର ଅଭାବ, ସାମାଜିକ ସ୍ଥିତି ଓ ରାଜନୈତିକ ପରିବେଶ ମୁଖ୍ୟତଃ ଦାୟୀ ।

ପଠନ ପ୍ରତି ଆଗ୍ରହ କହିବାବେଳେ ସାଧାରଣତଃ ଆମେ ବୁଝୁଁ ଯେ, ସାହିତ୍ୟରେ ଯେଉଁ କେତେଗୋଟି ଉଚ୍ଚମାନର ପୁସ୍ତକ ପ୍ରକାଶନ ହୋଇଛି, ତା'ର ସମାଜ ଉପରେ ପ୍ରଭାବ ଏବଂ ପାଠକର ସଚେତନତା । ଏ ଦୃଷ୍ଟିରୁ ବିଚାର କଲେ ଫକୀରମୋହନଙ୍କଠାରୁ ଆରମ୍ଭ କରି ଏ ଯାବତ୍ ଯେଉଁ କେତୋଟି ପୁସ୍ତକ ଉଚ୍ଚ-ମାନର ବୋଲି ଦାବି କରିଯାଏ, ତା'ର ସଂସ୍କରଣ ସଂଖ୍ୟା ସୀମିତ । ଖଣ୍ଡିଏ ଉତ୍ତମ ପୁସ୍ତକ ପ୍ରଥମ ସଂସ୍କରଣରେ ଏକ ହଜାର ଛପା ହେବା ବେଳେ ଦ୍ୱିତୀୟ ସଂସ୍କରଣ ଦେଖିବା କଦବା କ୍ୱଚିତ ତା' ଭାଗ୍ୟରେ ଜୁଟୁଛି ।

ଲର୍ଡ ବେକନ୍ କହିଥିଲେ—''ପୁସ୍ତକ ପଠନ ଏକ ପୂର୍ଣ୍ଣାଙ୍ଗ ମଣିଷ ତିଆରି କରେ ।'' ଏ ଉକ୍ତିଟି ବର୍ତ୍ତମାନ ଆଧୁନିକ ସଭ୍ୟତାର ମଣିଷମାନଙ୍କ ପାଇଁ ପ୍ରଶ୍ନବାଚୀ ହୋଇପାରେ । ଟେଲିଭିଜନ ଦେଖିଲେ, ରେଡ଼ିଓ ଶୁଣିଲେ, ଫିଲ୍ମ ଦେଖିଲେ, ଖବରକାଗଜ ପଢ଼ିଲେ ହୁଏତ ଜଣେ ପୂର୍ଣ୍ଣାଙ୍ଗ ମଣିଷ ହୋଇପାରେ ବୋଲି ଅନେକେ ଭାବନ୍ତି । ଅତ୍ୟନ୍ତ ଆଗ୍ରହ ଓ ବିଶ୍ୱାସ ଦ୍ୱାରା ଶବ୍ଦ ଶକ୍ତିଶାଳୀ ହୁଏ ଏବଂ ଏହି ଶବ୍ଦ ଆଧୁନିକ ଗଣମାଧ୍ୟମ ଦ୍ୱାରା ପ୍ରସାରିତ ହୁଏ ବୋଲି ସାଧାରଣ ଧାରଣା ହେବାରେ ଲାଗିଛି । କିନ୍ତୁ ଏହା ସଭ୍ୟତାର ପୃଷ୍ଠପୋଷକତା କରୁଥିଲେ ମଧ୍ୟ ସାଂସ୍କୃତିକ ମୂଲ୍ୟବୋଧକୁ ଉଜ୍ଜୀବିତ କରିବାରେ ବାଧକ ହେଉଛି ।

କେନ୍ଦ୍ର ସରକାର ଲୋକମାନଙ୍କୁ ପଠନ ପ୍ରତି ସଚେତନ କରିବା ପାଇଁ **Formal and Non-formal** ଶିକ୍ଷା ପାଇଁ କେତେକ ଯୋଜନା ପ୍ରସ୍ତୁତ କରିଛନ୍ତି । ପ୍ରାଥମିକ ସ୍ତରରେ ଅଧ୍ୟୟନ ପାଇଁ ଆଧୁନିକ ଜ୍ଞାନ ଓ ବିଜ୍ଞାନ ସଂପର୍କରେ ଧାରଣା ରହିବା ଉଚିତ । କିନ୍ତୁ ବିଦ୍ୟାଳୟର ପ୍ରାଥମିକ ସ୍ତରରେ ଅଧ୍ୟୟନ କେବଳ ଏକ ତୃତୀୟାଂଶ ଲୋକ ସଂଖ୍ୟାକୁ ଛୁଇଁବା ବେଳେ ଅନ୍ୟ ଦୁଇ ତୃତୀୟାଂଶ ଲୋକଙ୍କ ପାଖରେ ଏହା ପହଞ୍ଚେ ନାହିଁ । ଫଳରେ ଯେଉଁ ପୁସ୍ତକ ଜସ୍ଥ ସରକାରଙ୍କ ଦ୍ୱାରା ହୋଇଥାଏ, ସେଥିରେ ପାଠ୍ୟ ପୁସ୍ତକଠାରୁ ଆରମ୍ଭ କରି ଅଭିଧାନ ପର୍ଯ୍ୟନ୍ତ ଜଣାଯାଏ । ଅଧିକାଂଶ ପୁସ୍ତକର ଗୁଣାତ୍ମକ ମୂଲ୍ୟ ନାହିଁ ବା ଷ୍ଟାଣ୍ଡାର୍ଡ ନାହିଁ । ତେଣୁ ପ୍ରଥମ ପ୍ରକାଶନ ଆନ୍ଦୋଳନ କ'ଣ ହେବା ଉଚିତ, ତା' ପ୍ରତି ଗୁରୁତ୍ୱଦେବା ଆବଶ୍ୟକ ।

ଆମେ ଆମ ଅତୀତରେ ଯେଉଁ କେତେକ ପୁସ୍ତକ ପ୍ରକାଶନ ହୋଇଥିଲା, ତାକୁ ବ୍ୟବହାର କରି ପାଠକୀୟ ପ୍ରବୃତ୍ତି ସୃଷ୍ଟି କରିବା ହୋଇପାରି ନାହିଁ । ରାମାୟଣ ଓ ମହାଭାରତ ପରି ପୌରାଣିକ ଗ୍ରନ୍ଥକୁ ପାଠକୀୟ ଆଗ୍ରହ ସୃଷ୍ଟି ପରିବର୍ତ୍ତେ ଧାର୍ମିକ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଛି ।

ଜଣେ ଲେଖକ ପାଠକ ପାଇଁ ଲେଖେ । ସେ କେବେହେଲେ ନିଜ ପାଇଁ ଲେଖେ ନାହିଁ । ଯଦି ସେ ନିଜ ପାଇଁ ଲେଖୁଥାନ୍ତା, ପ୍ରକାଶ କରିବା ପାଇଁ ଆଦୌ ଇଚ୍ଛା କରନ୍ତା ନାହିଁ । ପାଠକ ପାଇଁ ଲେଖିବାବେଳେ ପାଠକର ଯେପରି ରୁଚି ତାହାକୁ ଦେଖି ଲେଖାଯାଏ ନାହିଁ । କାରଣ ପାଠକର ରୁଚି କ'ଣ କହିହେବ ନାହିଁ । ତେଣୁ ଲେଖକ ତା'ର ପୁସ୍ତକକୁ ପ୍ରକାଶନ କରାଇବା ଦ୍ୱାରା ହୁଏତ ଏହା ପାଠକ ଦ୍ୱାରା ଗ୍ରହଣୀୟ ହୋଇପାରେ ବା ହୋଇ ନପାରେ ।

ତେଣୁ ଲେଖକର ଗୁଣାତ୍ମକ ସୃଷ୍ଟି ଏବଂ ପାଠକର ରୁଚି ବହୁ ଭାବରେ ଲେଖକର ପାଠକମାନଙ୍କ ପ୍ରତି ଦୃଷ୍ଟିଭଙ୍ଗୀ ଉପରେ ନିର୍ଭର କରେ । ଏଣୁ ଲେଖକଙ୍କର ବ୍ୟାପକ ଅନୁଭୂତି ରହିବା ଆବଶ୍ୟକ । ଯେଉଁ ସାଧାରଣ ଲୋକମାନଙ୍କର କଥାକୁ ସେ କହୁଛି, ସେମାନଙ୍କ ଜୀବନକୁ ଅପ୍ରତ୍ୟକ୍ଷ ଭାବରେ ନିଜ ଭିତରେ ଅନୁଭବ କରି ପାରିଥିବ । ଲେଖକ ସର୍ବଦା ତାକୁ ସର୍ଜନାତ୍ମକ ସୃଷ୍ଟିର ଏକ କୁଶଳୀ ଶିଳ୍ପୀରେ ଉନ୍ନତ କରିପାରିବ । ଫଳରେ ଜଣେ ଲେଖକ ନିଜର ଅପରିଚିତ ପାଠକ ନିକଟରେ ସେହି ମୂଲ୍ୟବୋଧଭିତ୍ତିକ ସତ୍ୟକୁ ଉପସ୍ଥାପିତ କରି ପାରିବାକୁ ସଫଳ ହେବ । ପ୍ରକାଶନ ପାଇଁ ଏହିପରି ଏକ ବ୍ୟାପକ ପରିବେଶ ଓଡ଼ିଶାରେ ସୃଷ୍ଟି କରିବାର ଆବଶ୍ୟକତା ରହିଛି ।

ଓଡ଼ିଶାରେ ପ୍ରକାଶନ ସଂସ୍ଥା ସୀମିତ । ସେମାନଙ୍କର ବ୍ୟବସାୟିକ ସଫଳତା ପାଠ୍ୟ ପୁସ୍ତକ ପ୍ରକାଶନ ଓ ସରକାରଙ୍କୁ ଲାଇବ୍ରେରୀ ବହି ଯୋଗାଣ ଉପରେ ବିଶେଷ ନିର୍ଭର କରୁଥିବା ହେତୁ ସେମାନେ ପୁସ୍ତକ ନିର୍ଣ୍ଣୟ କଲାବେଳେ ପୁସ୍ତକର ଗୁଣାତ୍ମକ ମୂଲ୍ୟ ଉପରେ ବିଶେଷ ଗୁରୁତ୍ୱ ଦେଇନଥାନ୍ତି । ରାଜ୍ୟରେ ସାହିତ୍ୟ ପ୍ରତି ପାଠକୀୟ ରୁଚି ନଥିବା ଏବଂ ସେଥିପାଇଁ ବ୍ୟାପକ ପରିବେଶ ସୃଷ୍ଟି ହୋଇ ନଥିବା ଏହାର ମୁଖ୍ୟ କାରଣ ବୋଲି ସେମାନେ ଅବଗତ । ପ୍ରକାଶନ ସମସ୍ୟାର ମୂଳ କାରଣଟି ହେଉଛି, ରୁଚିସମ୍ପନ୍ନ ସାହିତ୍ୟ ସୃଷ୍ଟି, ଯାହାକୁ ସାଂସ୍କୃତିକ ଭିତ୍ତିଭୂମିର ମୂଳାଧାର ବୋଲି ଗ୍ରହଣ କରାଯାଏ, ତାହାର ଅଭାବବୋଧ । ଏହି କାରଣରୁ ଫକୀରମୋହନ, ଗୋପୀନାଥ, ସୁରେନ୍ଦ୍ରଙ୍କଠାରୁ ଆରମ୍ଭ କରି ଯେତେ ଶକ୍ତିଶାଳୀ ଲେଖକ ତାଙ୍କର ସୃଷ୍ଟି ସମ୍ଭାରକୁ ଋଦ୍ଧିମନ୍ତ କରିଛନ୍ତି, ତାଙ୍କର ପ୍ରକାଶିତ ପୁସ୍ତକର ପ୍ରଥମ ସଂସ୍କରଣଠାରୁ ଦ୍ୱିତୀୟ ସଂସ୍କରଣର ବ୍ୟବଧାନ ଅନ୍ୟୂନ୍ୟ ପକ୍ଷେ ପାଞ୍ଚ ବର୍ଷରୁ ପ୍ରାୟ ଦଶ ବର୍ଷ ହେବାର ପରିଲକ୍ଷିତ ହୁଏ । ଏପରିକି ବହୁ ସମୟରେ କୌଣସି କୌଣସି ଉନ୍ନତମାନର ପୁସ୍ତକ ଆଦୌ ରୁଚିଶୀଳ, ମାର୍ଜିତ ଓ ସାହିତ୍ୟ ମୂଲ୍ୟବୋଧ ଭିତ୍ତିକ ସୃଷ୍ଟି ସମ୍ଭାରର ପ୍ରକାଶନ ସମସ୍ୟା ନାହିଁ । ସମସ୍ୟା ହେଉଛି ପାଠକର ରୁଚିର ଆଭିମୁଖ୍ୟରେ ପରିବର୍ତ୍ତନ କରି ସାହିତ୍ୟ ରୁଚି ପାଇଁ ବ୍ୟାପକ କ୍ଷେତ୍ର ପ୍ରସ୍ତୁତ କରିବା । ପାଠକଙ୍କ ରୁଚିରେ ପରିବର୍ତ୍ତନ ଘଟିଲେ ପ୍ରକାଶନ ପାଇଁ ମଧ୍ୟ ବ୍ୟାପକ କ୍ଷେତ୍ର ପ୍ରସ୍ତୁତ ହେବ । ଏଥିପାଇଁ ଉନ୍ନତମାନର ପୁସ୍ତକ ରଚନା, ବ୍ୟାପକ ଲାଇବ୍ରେରୀ ଆନ୍ଦୋଳନ ଓ ପ୍ରାଥମିକ ସ୍ତରରେ ପଠନ ଅଭ୍ୟାସକୁ ବୃଦ୍ଧି କରିବା ପାଇଁ ସଚେଷ୍ଟ, ସୁରୁଚିସମ୍ପନ୍ନ ଶିଶୁ ସାହିତ୍ୟର ବ୍ୟାପକ ପ୍ରସାରର ଆବଶ୍ୟକତା ଉପରେ ଗୁରୁତ୍ୱ ଦିଆଯିବା ଉଚିତ । ଏଥିପାଇଁ ବିଭିନ୍ନ ଗଣମାଧ୍ୟମ ଜରିଆରେ ପୁସ୍ତକରେ ସବିଶେଷ ଆଲୋଚନା, ସମାଲୋଚନା ଓ ତର୍କମାର ଆବଶ୍ୟକତାକୁ ଏଡାଇ ଦିଆଯାଇ ନପାରେ । ଏହା ଯଦି ସଫଳ ଓ ସମ୍ଭବ ହୁଏ, ତେବେ ପ୍ରକାଶନକୁ ବ୍ୟାବସାୟିକ ସଫଳତା ପାଇଁ କେବଳ ସରକାରଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ ବରଂ ପୁସ୍ତକ ବିକ୍ରି ପାଇଁ ବ୍ୟାପକ କ୍ଷେତ୍ର ପ୍ରସ୍ତୁତ ହେବ ଏବଂ ବହୁଳ ଭାବରେ ପୁସ୍ତକ ପ୍ରକାଶିତ ହେବାର ସମ୍ଭାବନା ଦେଖାଦେବ ।



# ସୃଷ୍ଟି ଓ ସମୀକ୍ଷା

ଓଡ଼ିଆ କଥାସାହିତ୍ୟରେ ଗଣେଶ୍ୱର ମିଶ୍ର ଏକ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ । ସାମୁଦ୍ରିକ, ଆବୋର୍ତ୍ତ ଓ ନେତା ତିନୋଟି ଉପନ୍ୟାସ ପରେ 'ଅନ୍ଧାର' କ୍ଷୁଦ୍ରଗଳ୍ପ ସଙ୍କଳନ ମହାନଦୀ ବୁକ୍‌ସ ଦ୍ୱାରା ପ୍ରକାଶିତ ହୋଇଛି । ଛବିଶଟି କ୍ଷୁଦ୍ର କ୍ଷୁଦ୍ର ଗଳ୍ପ ବିଭିନ୍ନ ସମୟରେ 'ଝଙ୍କାର' 'ମାନସ' 'ସମାବେଶ' 'ଆସନ୍ତାକାଲି' 'ନବରବି' ଓ ଅନ୍ୟାନ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ମଣିଷ ଜୀବନର ନାନା ବୈଚିତ୍ର୍ୟମୟ ଅନୁଭୂତିକୁ ଗଭୀର ସହାନୁଭୂତି ସହିତ ଚିତ୍ରଣ କରି ସରଳ, ସାବଲୀଳ ଭାଷାରେ ରୂପ ଦେଇଛନ୍ତି ଶ୍ରୀ ମିଶ୍ର । ଅଧିକାଂଶ ଗଳ୍ପରେ ଜନଜୀବନର ଚିତ୍ର ପ୍ରତିଫଳିତ । ସେମାନଙ୍କ ଭାଷାର ଏକ ସ୍ୱତନ୍ତ୍ର ଶୈଳୀ ମଧ୍ୟ ଫୁଟିଉଠିଛି ସେହି ଗଳ୍ପ ଗୁଡ଼ିକରେ ।

ଓଡ଼ିଆ କଥାସାହିତ୍ୟକୁ ନେଇ ବହୁ ବାଦବିସମ୍ବାଦ, ତର୍କବିତର୍କ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶିତ ହେଉଛି । କଥାସାହିତ୍ୟରେ ଯେଉଁ ଧାରା ବହିଚାଲିଛି ଏବଂ ଯେଉଁ ସାହିତ୍ୟିକମାନେ ସେମାନଙ୍କର ସ୍ୱାକ୍ଷର ରଖିଯାଉଛନ୍ତି ସେହି ପ୍ରତିଷ୍ଠିତ ସଫଳ କଥାକାରମାନଙ୍କ ମଧ୍ୟରେ ଗଣେଶ୍ୱର ମିଶ୍ର ଅନ୍ୟତମ କହିଲେ ଭୁଲ୍ ହେବନି । ହେମିଙ୍ଗୱେଙ୍କର 'ଦି ଓଲ୍‌ଡ ମ୍ୟାନ୍ ଆଣ୍ଡ ସି' ପଢ଼ିଲାବେଳେ ଯେଉଁ ଭାଷା ଓ ଭାବର ଗଭୀରତା ଉପଲବ୍ଧି କରିଯାଏ, ତାହା ଗଣେଶ୍ୱର ମିଶ୍ରଙ୍କର 'ସାମୁଦ୍ରିକ' ଓ ଆବୋର୍ତ୍ତ'ରେ ପରିଲକ୍ଷିତ ହୋଇଥିଲା । କୌଣସି ଏକ ବାତାବରଣକୁ ନେଇ ସୁନ୍ଦର ଭାବରେ ସଜାଇ ରଖିବାର ପରିକଳ୍ପନାରେ ଚିତ୍ରକୁ ପୂର୍ଣ୍ଣ ଦେବାର ଧୁରୀଣ ଶିଳ୍ପୀ ହେଉଛନ୍ତି ଶ୍ରୀ ମିଶ୍ର । ଯେକୌଣସି ଗାଳ୍ପିକର ଭାଷା ଓ ଶୈଳୀଠାରୁ ଏହା ପୃଥକ୍ ।

'ଅନ୍ଧାର' ଗଳ୍ପଟିକୁ ନେଇ 'ଅନ୍ଧାର' ଗଳ୍ପ ସଙ୍କଳନର ନାମକରଣ । ଶ୍ରେଷ୍ଠ କଥାଟିକୁ ସଜାଇବାରେ ବାସ୍ତବିକ କେତେ ବିଚକ୍ଷଣତା ଶ୍ରୀ ମିଶ୍ରଙ୍କର । ମୁଁ, ଭରତ ଓ ହାସି । ଦୁଇଟି ପୁଅ ଓ ଗୋଟିଏ ଝିଅ । ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀ । ଯୌନ-ଚେତନା ଯେ ବୟସ ନିର୍ବିଶେଷରେ ସମସ୍ତଙ୍କୁ ଆସେ, ଏ କଥାଟିକୁ ସୁନ୍ଦରଭାବେ କହିଛନ୍ତି ଭରତ ମୁହଁରେ—'ମୁଁ ହାସି କାନ୍ଧ ଚିପି ଦେଲି । କାହାକୁ କହିବୁନି ।' 'ସତକୁ ସତ ମୁଁ କାହାକୁ କହି ନ ଥିଲି ।' ବାସ, କଥାଟି ଶେଷ । ସୂକ୍ଷ୍ମ ଅନୁଭୂତିର ଏକ ସଜାଗ ଚିତ୍ରଣ ।

ସେହି ଚେତନାର ଅନ୍ୟ ଏକ ଗଳ୍ପ 'ପରିଣତି'। ସ୍କୁଲରେ ପଢୁଥିବା ସହପାଠିନୀ ମାଲା ହଠାତ୍ କାନ୍ଧରେ ହାତ ପକାଇ ପଚାରିଲା, 'କରେ ରୁ ଏଇଠି— ଏକୁଟିଆ ! ଶ୍ରେଷ୍ଠ ପିଲାଟି କୌଣସି ଅନୁଭୂତି ନ ଥାଇ ନିଜକୁ ଏତିକ କଥାରେ ବସ୍ତୁସ୍ଥ ବୋଲି ଭାବି ନେଲା। ହାସ୍ୟରସର ପରିବେଷଣ ପୂର୍ବକ ଏକ ବ୍ୟଙ୍ଗାତ୍ମକ ଶୈଳୀର ବିଶ୍ଳେଷଣ : 'ଗାନ୍ଧୀଙ୍କ ଚପଲ କଳା, ପୀତାମ୍ବରବାବୁଙ୍କ ଜୀବନର ଗୋଟିଏ ସ୍ମରଣୀୟ ଘଟଣା' ଇତ୍ୟାଦି ଗଳ୍ପଗୁଡ଼ିକରେ ଦେଖିବାକୁ ମିଳେ।

ସଙ୍କଳନରେ ଥିବା ବିଭିନ୍ନ ସ୍ୱାଦର ଗଳ୍ପ ପୁଣି ଶୈଳୀ ଓ ତାହାର ଅନନ୍ୟତା ଏବଂ ସର୍ବୋପରି ଭାଷାର ସାବଲୀଳତା ହେତୁ ଗଳ୍ପଗୁଡ଼ିକ ପାଠକ ନିକଟରେ ନିଶ୍ଚିତ-ଭାବେ ଆଦୃତ ହେବ। ପ୍ରତ୍ୟେକ ଗଳ୍ପରେ ନିଜେ ଲେଖକ ହିଁ ପ୍ରଥମ ପୁରୁଷ ଏବଂ ତାକୁ ନେଇ କାହାଣୀଟି ଗଢ଼ିଉଠିଛି। ପୁସ୍ତକର ଶେଷ ଗଳ୍ପ ସମୁଦ୍ର ଯେମିତି ପାଠକକୁ ଭାବନା ସମୁଦ୍ରକୁ ଠେଲି ଦେଉଛି ! ବୁଢ଼ୀମା ଓ ନାତିର ସମ୍ପର୍କ, ସମୁଦ୍ରକୁ ଦେଖିବାକୁ ଯାଇ ବାହାର ଜଗତ ସହିତ ପରିଚିତ ହେବା ଏବଂ ତା' ଭିତରେ ଆବିଷ୍କାର କରିବା ବ୍ୟକ୍ତିର ଅସ୍ତିତ୍ୱ ବାସ୍ତବିକ୍ ଏକାନ୍ତ ଉପଭୋଗ୍ୟ।

ଶ୍ରୀ ମିଶ୍ରଙ୍କର ଗଳ୍ପ ପଢ଼ିବାବେଳେ ଯେମିତି ଭାବିବାକୁ ହୁଏ ବିଖ୍ୟାତ ଲେଖକ-ମାନଙ୍କର ଗଳ୍ପଗୁଡ଼ିକ। ଗୋଟିଏ ଗଳ୍ପ ପଢ଼ି କିଛି ଭାବିବାକୁ, ଚିନ୍ତା ଓ ଚେତନାର ପରିସର ବଢ଼ାଇବାକୁ ଖୋରାକ ମିଳିଯାଏ। ବୌଦ୍ଧିକତାର କ୍ଲିଷ୍ଟତା ଓ ବର୍ଣ୍ଣନାର ବର୍ଣ୍ଣାଢ଼୍ୟ ପରିପାଟୀ ଏ ଗଳ୍ପଗୁଡ଼ିକରେ ନାହିଁ। ବହିଟି ପଢ଼ିବାକୁ ଆରମ୍ଭ କଲେ ଶେଷ ନ କରିବା ପର୍ଯ୍ୟନ୍ତ ହାତରୁ ଖସିବ ନାହିଁ। ମୂଲ୍ୟ କିଛି ବେଶୀ ( ପନ୍ଦର ଟଙ୍କା ) ହୋଇଗଲା ପରି ଲାଗିଲା।



# ଅନ୍ଧକାରର ସୀମା

ପଞ୍ଚଦଶ ଗୋଟି ଗଳ୍ପର ସମାହାର ଶ୍ରୀ ରମେଶ ଧଳଙ୍କର "ଅନ୍ଧକାରର ସୀମା ।" ଶ୍ରୀ ଧଳ ଓଡ଼ିଆ ସାହିତ୍ୟରେ ନୂଆ ନୁହନ୍ତି । ଶିଶୁ ସାହିତ୍ୟର ସ୍ରଷ୍ଟା ଭାବରେ ରାଜ୍ୟ ସରକାରଙ୍କ ଦ୍ୱାରା ସେ ପୁରସ୍କୃତ । ତାଙ୍କର ଲେଖନୀ ମୂନରୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ୱାଦ ନେଇ ପ୍ରସ୍ତୁତ ହୋଇଥିବା ଗଳ୍ପଗୁଡ଼ିକ ସ୍ୱକୀୟ ସାଧନାର ପରିଚୟ ଦିଏ ।

ଓଡ଼ିଆ ସାହିତ୍ୟକୁ କେବଳ କେତେଜଣ ମୁଷ୍ଟିମେୟ ଅଧ୍ୟାପକ ବା ସରକାରୀ ଚାକିରିଆ ନିଜ ଭିତରେ ସୀମିତ କରି ରଖିବାର ଯେଉଁ ଅପଚେଷ୍ଟା ଚାଲିଛି ଓ ସେମାନଙ୍କ ମଧ୍ୟରେ ସେହି ଅହମିକାର ଯେ ପ୍ରକାର ପ୍ରତିଫଳନ ହେଉଛି, ତାକୁ ଯଥାଯଥ ଉତ୍ତର ଦେଇ ପାରିଛନ୍ତି ଶ୍ରୀ ଧଳ—ନିଜର ବଳିଷ୍ଠ ଲେଖନୀ ଚାଳନାର ସିଦ୍ଧହସ୍ତତାରେ ।

ଜଣେ ବଡ଼ ପଣ୍ଡିତଙ୍କର ସବୁ ପୁଅଗୁଡ଼ିକ ଜ୍ଞାନୀ ନ ହେବା ପରି ଶ୍ରୀ ଧଳଙ୍କର ସମସ୍ତ ଗଳ୍ପଗୁଡ଼ିକ ମଧ୍ୟରୁ 'ଅନ୍ଧକାରର ସୀମା', 'ମୋହିନୀ କଳା', ଜଣେ କେବଳ ଫେରିଲା ନାହିଁ, 'ଶୀଲା ଓର୍ଥିର ଶିକାର' 'ଦୂର ପାହାଡ଼' ଗଳ୍ପଗୁଡ଼ିକ ବିଶେଷ ପ୍ରଣିଧାନଯୋଗ୍ୟ । ପ୍ରତ୍ୟେକ ଗଳ୍ପରେ ଦେଖିବାକୁ ମିଳେ ସାମାଜିକ ଜୀବନ ବିପର୍ଯ୍ୟସ୍ତର କରୁଣ କାହାଣୀ । ଲେଖକ ନିଜେ ଅନୁଭବ କରିଛନ୍ତି—ସତ୍ୟକୁ ପରୀକ୍ଷାଗାରରେ ପରୀକ୍ଷା କରିଛନ୍ତି—ତାଙ୍କର ପରୀକ୍ଷାଗାର କଲେଜ କଚେରୀ ଘର ବା ଯେ କୌଣସି ଗାଁ ମାଟିର ଭୋଟ ଗ୍ରହଣ କେନ୍ଦ୍ର । ସବୁଠି ସେ ଖୋଜିଛନ୍ତି ସମସ୍ୟା—ସେ ବିଦ୍ରୂପ କରିଛନ୍ତି ଶାସକର ଶାସନକୁ । ଶିକ୍ଷକର ଅସହାୟ ଅବସ୍ଥାକୁ ଦେଖି ସେ ବ୍ୟତିବ୍ୟସ୍ତ ହୋଇଛନ୍ତି ।

'ଅନ୍ଧକାରର ସୀମା' ଗଳ୍ପରେ ଶିକ୍ଷକର ଅ.ଦର୍ଶପଦ ଦିବ ଯାଇନି । ଅବାଞ୍ଛିତ' ଗଳ୍ପରେ ଦେଶ ଶାସନ କିପରି ଚାଲିଛି ଏବଂ ଯୁବକମାନେ କିଭଳି ଭାବରେ ରାଜନୀତି ନାମରେ ଟାଉଟରି କରି ଦେଶକୁ ନଷ୍ଟ କରୁଛନ୍ତି ତା'ର ଚିତ୍ର ଦେଇଛନ୍ତି । କେତେଗୁଡ଼ିଏ ଗଳ୍ପ କଚେରୀ ହତା ଭିତରେ ଘଟୁଥିବା ବିଷୟ ପ୍ରତି ଦୃଷ୍ଟି ଦିଆଯାଇ ଲେଖାଯାଇଛି । କୋର୍ଟ କଚେରୀ--ବିଭିନ୍ନ ଲୋକମାନଙ୍କର ସମାବେଶ । ସେଠି ଦାଗୀ, ଚୋର, କଳବଜାରୀଠାରୁ ଆରମ୍ଭ କରି ନାରୀ ଧର୍ଷଣ ଅଭିଯୋଗରେ ଅଭିଯୁକ୍ତ

ଅପରାଧ ମଧ୍ୟ ଆସନ୍ତି । ନିରପରାଧ ବ୍ୟକ୍ତି ଅପରାଧୀ ସାବ୍ୟସ୍ତ ହୁଅନ୍ତି । ପ୍ରତିବାଦ କରିବାର କ୍ଷମତା ନାହିଁ ସେହେତୁ ଆଇନର ଶାସନ ଚାଲିଛି । ଓକିଲ ଜାଣି ନୀରବ ରୁହନ୍ତି— ଏ ଦୃଷ୍ଟିରୁ "ଖଜୁରୀ ଗଛ" ଓ "ବେଲର" ଗଳ୍ପ ପ୍ରଣିଧାନଯୋଗ୍ୟ ।

ଏଭଳି ପ୍ରତ୍ୟେକ ଗଳ୍ପକୁ ପରୀକ୍ଷା ନିରୀକ୍ଷା କଲେ ସେଥିରେ ସମାଜରେ ରହୁଥିବା ମଣିଷଟିର ଚିତ୍ର ଆମ ଆଖିରେ ପଡ଼େ । ସେ ମଣିଷଟି ହୁଏତ ଆଇନ ଆଖିରେ ଦୋଷୀ, ଚାକିରୀରେ ଗୋଲାମଗିରି କରି କରି କ୍ଳାନ୍ତ ଅବା ଦାରିଦ୍ର୍ୟତାରେ କୁଡ଼ୁବୁଡ଼ୁ ଶିକ୍ଷକ । ଶ୍ରୀ ଧଳଙ୍କର ଲେଖନୀ ସମସ୍ତ ସମସ୍ୟାକୁ ଅନ୍ତରଙ୍ଗ ସହକାରେ ଛୁଇଁ ପାରିଛନ୍ତି । ତେଣୁ 'ଛକ—ପାପ ଓ ପୁଣ୍ୟର', 'ଅଙ୍କୋପାସ୍', 'ପୋଲିଂ ବୁଥ୍' 'ପ୍ରାର୍ଥନା ଚାରିଗୋଟି ସନ୍ତାନ ପାଇଁ' ଇତ୍ୟାଦି ଗଳ୍ପର ସୃଷ୍ଟି ।

ଗଳ୍ପଗୁଡ଼ିକ ସମସାମୟିକ । ସମସ୍ତ ସହିତ ଠିକ୍ ତାଳରେ ତାଳଦେଇ ଚାଲିଛି । ଆଧୁନିକ ସମାଜ, ରାଜନୀତି ଓ ବ୍ୟକ୍ତିମାନଙ୍କର ଜୀବନ ଯନ୍ତ୍ରଣାର ସ୍ୱର ଝଂକୃତ ହୋଇ ଉଠିଛି ତାଙ୍କର ପ୍ରତ୍ୟେକ ଗଳ୍ପ ମାଧ୍ୟମରେ । ଗଳ୍ପଗୁଡ଼ିକରେ ମାନବିକ ମୂଲ୍ୟବୋଧ ପ୍ରତିଷ୍ଠା କରିଯିବାର ସଚେତନତା ଲକ୍ଷ୍ୟ କରାଯାଇପାରେ । ସବୁ ଗଳ୍ପଗୁଡ଼ିକର ଭାଷା ସମାନ ନୁହେଁ । କେତେକ ଗଳ୍ପର ସ୍ୱର ବଳିଷ୍ଠ ଦେଖାଯିବା ବେଳେ ଅନ୍ୟ କେତେକ ଦୁର୍ବଳ ଅନୁଭବ ହୁଏ । ସୁଚିନ୍ତିତ ଓ ସୁନିର୍ବାଚିତ ଗଳ୍ପର ସମାହାର "ଅନ୍ଧକାରର ସୀମା" ସାମାନ୍ୟ ମୁଦ୍ରଣ ତ୍ରୁଟି ମଧ୍ୟରେ ନିଜର ନାମକୁ ସାର୍ଥକ କରିପାରିଛି ।



# ଅଗ୍ନିଯୁଗ ଓ କବି ପ୍ରସନ୍ନ ପାଟଶାଣୀ

ପଚ୍ଚିଶଟି କବିତାର ସମାହାର କବି ପ୍ରସନ୍ନ ପାଟଶାଣୀଙ୍କର କବିତା ପୁସ୍ତକ 'ଅଗ୍ନିଯୁଗ'। ବ୍ୟକ୍ତିର ନିଜସ୍ୱ ଅନୁଭୂତିକୁ ପ୍ରକାଶ କରିବା କବିତାର ଧର୍ମ। ଏଣୁ କବି ପ୍ରସନ୍ନ ପାଟଶାଣୀ ତାଙ୍କ ନିଜସ୍ୱ ଅନୁଭୂତି ସାଙ୍ଗକୁ ସମସ୍ତ, ପରିବେଶ ଓ କାଳର ପ୍ରଭାବକୁ ସାଙ୍ଗରେ ନେଇ କବିତା ରଚନା କରିଛନ୍ତି। ସାଂପ୍ରତିକ କାଳର ସମସ୍ୟା, ଦ୍ୱନ୍ଦ୍ୱ, ଯନ୍ତ୍ରଣା ଓ ସମାଜର ଘାତ-ପ୍ରତିଘାତ ଇତ୍ୟାଦି ବର୍ଣ୍ଣିନା କରାଯାଇଛି କବିତାଗୁଡ଼ିକ ମାଧ୍ୟମରେ। ବର୍ତ୍ତମାନ ଆଧୁନିକ କବିତା ନାନା ସମାଲୋଚନାର ଶରବ୍ୟ। କବି ତା'ର କବିତାରେ ଯୁଗଯନ୍ତ୍ରଣାର ସ୍ୱର ଉଠାଉଥିବାବେଳେ ସମାଲୋଚକ କବିତା ବାସ୍ତବିକତା ବା ଜୀବନ-ଯନ୍ତ୍ରଣାଠାରୁ ଦୂରକୁ ଚାଲିଯାଉଛି ବୋଲି ଅଭିଯୋଗ ବାଢ଼େ। ଏହି ପରିପ୍ରେକ୍ଷୀରେ କେତେକ କବି ପ୍ରସନ୍ନ ପାଟଶାଣୀଙ୍କୁ ବିପ୍ଳବୀ କବି ମଧ୍ୟ କହିଥାନ୍ତି। ଆଜିର କବିତାର ରୂପ ସାଂପ୍ରତିକ ଅବସ୍ଥାରୁ ଜନ୍ମ। କେବଳ କବିତାର ଅନ୍ତର୍ନିହିତ ଗୁଣ ନୁହେଁ, ତା'ର ଆଙ୍ଗିକ ପରିପାଟୀ ମଧ୍ୟ ତଦନୁରୂପ। କବି ଚେତନାରେ ଘଟିଥିବା ବିପ୍ଳବ କବିତା ମାଧ୍ୟମରେ ପ୍ରକାଶ ପାଏ।

ତାଙ୍କର କବିତା ଗ୍ରନ୍ଥ 'ଅଗ୍ନିଯୁଗ'ର ପ୍ରତ୍ୟେକଟି କବିତା ପାଠକର ମନକୁ ଆଚ୍ଛନ୍ନ କରିବାକୁ ସକ୍ଷମ। ସତ୍ୟର ଅନୁସନ୍ଧାନ କରିବାକୁ ଯାଇ ସେ ହୋଇଉଠିଛନ୍ତି ସତ୍ୟଶୀଳ। ଏଣୁ 'କୋଣାର୍କ' କବିତାରେ ଲେଖିବାକୁ ଯାଇ କହିଛନ୍ତି—

'ଉଦାସୀ କୋଣାର୍କ
ପ୍ରକୃତିର ଫେଣାରେ ମଧୁ ଭଳି ସଞ୍ଚିତ ଅମୃତର କଳା,
ଭାଜି ଯାଇ ପାରି ନାହିଁ ଫୁଲର କେଶର ଭଳି,
ଅକ୍ଷୟ ଗୁହାରେ ପ୍ରଣୟର ହଜିଲା ନୂପୁର।'

କୋଣାର୍କର କାରୁକାର୍ଯ୍ୟ ଭିତରେ ସେ ଖୋଜିଛନ୍ତି ଶିଳ୍ପୀର କଳା-ଚାତୁର୍ଯ୍ୟ ଏବଂ ସେ ଆଶାବାଦୀ ହୋଇଛନ୍ତି ମଧ୍ୟ। ଏତେ ଘାତ-ପ୍ରତିଘାତ ସହି କୋଣାର୍କର ଶିଳ୍ପ ଐଶ୍ୱର୍ଯ୍ୟ ଯେ ଏବେ ମଧ୍ୟ ପ୍ରତ୍ୟେକ ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରେ, ତାହା ହିଁ କବିତାର ମୁଖ୍ୟ ସ୍ୱର।

ଜନନୀ ସେ। ନିଜକୁ ତିଳ ତିଳ ଦଗ୍‌ଧ କରି ସନ୍ତାନକୁ ବଢ଼ାଇବା ତା'ର କାମ। ଅନାହାରରେ ମୃତ୍ୟୁ ବରଣ କରିଥିବା ଜନନୀକୁ ଲକ୍ଷ୍ୟ କରି, 'ମା,ରୁ

ତରନା’ କବିତାରେ କବି ପାଂଶାଣୀ ନୂତନ ଆଶାର ସଞ୍ଚାର କରିବାକୁ ପ୍ରଚେଷ୍ଟା କରିଛନ୍ତି । ସେ କହିଛନ୍ତି—

‘‘ଆଖି ଖୋଲ୍ ଅନ୍ଧ,
ସ୍ୱପ୍ନ ତୋର ଧାନ ବିଲ
କେଣ୍ଡା ତୋର ଗହଣା
କାହାର ବଳେ ହାତ
ଗଲାକଣ୍ଟା ପାଉଣା
ହାତ ତୁ ବଢ଼ାଅନା’’, ଇତ୍ୟାଦି

ପ୍ରତ୍ୟେକଟି କବିତା ଏକ ନୂତନ ଅନୁଭୂତି ମନରେ ଆଣେ । ଛବିବର୍ଣ୍ଣୀଙ୍କ ମୃତ୍ୟୁରେ ବ୍ୟଥିତ କବି ଆତ୍ମାରୁ ନିଃଶେଷିତ ହୋଇଛି ‘‘ଧର୍ଷିତା ମାଟି’’, ଅଗ୍ନିଯୁଗ କବିତା ଗ୍ରନ୍ଥରେ ଏହା ଅନନ୍ୟ ସାଧାରଣ । ଛବିବର୍ଣ୍ଣୀର ନିର୍ମମ ମୃତ୍ୟୁରେ କବିର ଆତ୍ମା ବିଳପିତ ଓ ସନ୍ତପିତ, ଏହି ଅବଳାଟିକୁ ଏକାକିନୀ ଦେଖି ନହିବାଲିରେ—

‘‘ବିଲୁଆଦାନ୍ତରେ ଝୁଣି ହୋଇଯାଏ
ଏକେଲି ପୋଝଣି ଛେଳିର ପଞ୍ଜା,
ଫାଟି ପଡ଼େ ଚକ୍ରାରରେ ଶସ୍ୟର ପୁଡ଼ା ଝଁପି,
ପଡ଼େ ଫୁଲ, ଦୁହିଁ ହୋଇଯାଏ ଗଛର ନାଡ଼’’,

ଧର୍ଷିତା ମାଟି କବିତାର କାବ୍ୟିକ ଚେତନାରେ ଅସଂଖ୍ୟ ରୂପକଳ୍ପ ଓ ଉପମାର ଚିତ୍ର ଦେବା ଦ୍ୱାରା ସାଧାରଣ ପାଠକର ବୋଧଗମ୍ୟ ହେବା କଷ୍ଟସାଧ୍ୟ । ଅସହାୟ ନାରୀ ପ୍ରତି ପାଶବିକ ଅତ୍ୟାଚାରର ବର୍ଣ୍ଣନା କରି କବି କହନ୍ତି—

‘‘ କେତୋଟି ମଣିଷର ନିଷ୍ଠୁର ପଞ୍ଜରା ତଳେ
ଦାସ୍ୟମାନ୍ତ ବାଳିକାର ଲଜ୍ଜା
ସ୍ତନଭୂଣ୍ଡି କାମୁଡ଼ିଲେ ନିର୍ଗତ ହୁଏନା ନିଃଶ୍ୱାସର ଧୂଆଁ
ଯୋନିକୁ କାମୁଡ଼ିଲେ ନିର୍ଗତ ହୁଏନା ଶୃଙ୍ଗାର ଲାସ୍ୟ’’,

ତଥାପି ଏ ମଣିଷର ପ୍ରବୃତ୍ତି ପଶୁତୁଲ୍ୟ, ଧର୍ଷିତା ମାଟି, ଅଗ୍ନିଯୁଗ କବିତା ଗ୍ରନ୍ଥର ଏକ ସଫଳ କବିତା । ସମାଜରେ ଘଟୁଥିବା ଘଟଣା ପ୍ରତି ବ୍ୟଙ୍ଗ ଓ କବିଙ୍କର ଅସହାୟତାର ବାସ୍ତବ ଚିତ୍ର ଏଥିରେ ବେଶ୍ ପ୍ରତିଫଳିତ ।

କବି ପାଟ୍ଟଶାଣୀଙ୍କର ବ୍ୟଙ୍ଗ ବିଦ୍ରୂପର ତୀବ୍ରତା ପାଠକର ହୃଦୟକୁ ମନ୍ଥିତ କରେ । କବି ତାଙ୍କର ସାମାନ୍ୟ କଥନରେ କହିଛନ୍ତି, "ଦଳିତାର ଗୁଣ ହେଲା ନିଜେ ଜଳି ଅନ୍ୟକୁ ଆଲୋକ ପ୍ରଦାନ କରିବା, ସେହିପରି ନିଜ ସୃଷ୍ଟିରେ ନିଜେ ବିଭୋର ହେବା କବିର ଧର୍ମ । ତେଣୁ ନିଜ ସୃଷ୍ଟି ବିଷୟରେ ବିଶେଷ ସଫେଇଦେବାର ମୁଁ ପକ୍ଷପାତୀ ନୁହେଁ" । ତାଙ୍କର ପ୍ରତ୍ୟେକ କବିତା ପାଠକ ପ୍ରାଣରେ ଏକ ନୂତନ ଉଦ୍‌ବେଳନ ସୃଷ୍ଟି କରିବ ଏଥିରେ ସନ୍ଦେହ ନାହିଁ ।"

———

# "ହାତରେ କିଛି ନାହିଁ"

ଆଧୁନିକ ଓଡ଼ିଆ କବିତାର ଉନ୍ମେଷ ରାଧାନାଥ, ମଧୁସୂଦନ, ଫକୀରମୋହନ, ଗଙ୍ଗାଧର ଓ ନନ୍ଦକିଶୋରଙ୍କଠାରୁ ଆରମ୍ଭ । ରୋମାଣ୍ଟିକ ଚେତନାର ଭିତ୍ତି ଉପରେ ସତ୍ୟବାଦୀଯୁଗର ଉଗ୍ର ଜାତୀୟଚେତନା ଏବଂ ପରେ ପରେ ସାମ୍ୟବାଦ ଓ ପ୍ରଗତିବାଦୀ ଆଭିମୁଖ୍ୟ ନେଇ ଆଧୁନିକ ଓଡ଼ିଆ କବିତାର ରୂପ ବିଭବରେ ଯୋଗ ଦିଅନ୍ତି ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, କାଳନ୍ଦୀ ଚରଣ, ବୈକୁଣ୍ଠନାଥ ଓ ଗୋଦାବରୀଶ ଇତ୍ୟାଦି । ଏମାନଙ୍କ କବିତାରେ ଗଭୀର ମାନବିକ ସଂବେଦନ ସହିତ ବୈପ୍ଳବିକତା ଓ ସାମାଜିକ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ସ୍ୱାକ୍ଷର ବହନ କରେ । ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରେ କବିତାର ଢଙ୍ଗ ଓ ରୂପରେ ଏକ ବୈପ୍ଳବିକ ପରିବର୍ତ୍ତନ ଘଟେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସମାଜ ଓ ଅର୍ଥନୀତିର ବ୍ୟାପକ ପରିବର୍ତ୍ତନରେ କବିତା କ୍ଷେତ୍ରରେ ଭାବଗତ ସଂଘର୍ଷ ଘଟେ । ଏହି ସଂଘର୍ଷ ସୃଷ୍ଟି କରେ ମିଶ୍ର ଅନୁଭୂତି । ସମାଜ ପ୍ରତି ଆଦର୍ଶବାଦୀ ମନୋଭାବ, ସ୍ୱାଧୀନତା ପରବର୍ତ୍ତୀ ସମୟର ନୈରାଶ୍ୟତା, ଯୁଦ୍ଧୋତ୍ତର ସମାଜରେ ଅର୍ଥନୈତିକ ସ୍ଥିତିରେ ବ୍ୟକ୍ତିଗତ ଚେତନା ଓ ତାର ପ୍ରତିକ୍ରିୟା, ଅତୀତ ପରମ୍ପରା ପ୍ରତି ଅବିଶ୍ୱାସ, ମୃତ୍ୟୁ ଚେତନା ଇତ୍ୟାଦି ନୂତନ ଭାବନା ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ବିକାଶ ଲାଭକରେ ।

ଓଡ଼ିଆ କବିତା ଉପରେ ଟି.ଏସ୍. ଇଲିୟଟ୍, ଏଜ୍ରା ପାଉଣ୍ଡ, ହପ୍‌କିନ୍‌ସ ଆଦି ବିଶିଷ୍ଟ ପାଶ୍ଚାତ୍ୟ କବିଙ୍କର କାବ୍ୟ ଭାବନା ଓ ଆଙ୍ଗିକତାର ପ୍ରଭାବ ପଡ଼େ । ଫଳରେ ପାରମ୍ପାରିକ କାବ୍ୟ ଚେତନାକୁ ଉପେକ୍ଷାକରି ବ୍ୟକ୍ତିକେନ୍ଦ୍ରିକ ହୋଇ ଆତ୍ମଲୀନ ହୋଇପଡ଼େ କବି । ଆନ୍ତର୍ଜାତିକ ଭାବଚେତନା ସହିତ ସଂଶ୍ଳିଷ୍ଟ ହେବାପାଇଁ ମନ ବ୍ୟାକୁଳିତ ହୋଇପଡ଼େ । ଅସ୍ତିତ୍ୱବାଦୀ ଓ ଅତିବାସ୍ତବବାଦୀ ଭାବଧାରା ଓଡ଼ିଆ କବିତାର ଭାବଧାରାକୁ ଦୃଢ଼େଇ ଦିଏ । ତେଣୁ କବିତାର କଳାତ୍ମକ ଶୈଳୀକୁ ନେଇ କବିତା ଲେଖିବା ଅପେକ୍ଷା ଜୀବନର ବିଚ୍ଛିନ୍ନଗତି ସହ ତାଳଦେଇ ଲେଖିବା ଦ୍ୱାରା କବିତା ଅଧିକ ଗଦ୍ୟାଶ୍ରୟୀ ହୋଇଯାଏ । ଫଳତଃ କବିତାର ଅନ୍ତଃସ୍ୱର ଆବେଗ ପ୍ରବଣତା ଅପେକ୍ଷା ଯୁକ୍ତିନିଷ୍ଠତା ଓ ବଳିଷ୍ଠ ବାସ୍ତବବାଦୀ ଭାବନାକୁ ଗ୍ରହଣକଲା ।

ପ୍ରୟୋଗବାଦୀ କବିତା ବହୁ ମାତ୍ରାରେ ଶୈଳୀ ସର୍ବସ୍ୱ ହୋଇ ଶବ୍ଦର ବିଳାସ, ଭାଷାର ବାହ୍ୟାଡ଼ମ୍ବର, ପ୍ରତୀକ ତଥା ଚିତ୍ରକଳ୍ପର ବ୍ୟାପକ ପ୍ରୟୋଗ ଓ

ସର୍ବୋପରି ଇଂରେଜୀ କାବ୍ୟ ଧାରାର ଅନୁସରଣ କଲି । ଏହି କାବ୍ୟ ଧାରାର ବ୍ୟାପକ ପ୍ରସାରକୁ ବୃଦ୍ଧିକଲା ମିଥ୍ର ପ୍ରୟୋଗ ଏବଂ ଏହାର ମାଧ୍ୟମରେ ମଣିଷର ଜଟିଳ ଓ ସୂକ୍ଷ୍ମାତିସୂକ୍ଷ୍ମ ଭାବନାରାଜିକୁ ଅତି ସରଳ ଓ ସ୍ୱଚ୍ଛନ୍ଦ ଭାବରେ ପ୍ରକାଶ କରାଗଲା ।

ଓଡ଼ିଆ କବିତାର ଏହି ସମୟରେ ସମାଜ ଓ ପାରିପାର୍ଶ୍ୱ ପ୍ରତି କବିର ପ୍ରତିକ୍ରିୟା ଯେତିକି ତୀକ୍ଷ୍ଣ ଓ କଳାତ୍ମକ ହୋଇଛି, ନିଜ ଜୀବନର ଅନୁଭୂତି ପ୍ରତି ସେତିକି ସଚେତନତା ବୃଦ୍ଧି ପାଇଛି । କବି ସତ୍ୟାଶ୍ରୟୀ ହୋଇ ଅନୁଭୂତିର ଅନ୍ତରଙ୍ଗତାକୁ ଗୁରୁତ୍ୱ ଦେଇଛନ୍ତି । କବିତାର ଭାବ ହେଉଛି ଅଧିକ ସ୍ୱଚ୍ଛ ଓ ସୁବୋଧ । କବିର ବ୍ୟକ୍ତିଗତ ଜୀବନର ନୈରାଶ୍ୟ, ପ୍ରେମରେ ବ୍ୟର୍ଥତା, ଆଶାର ଅପୂରଣୀୟତା ନିଃସଙ୍ଗତା, ବିଚ୍ଛିନ୍ନତାବୋଧ, ସମୟ ସଚେତନତା, ମୃତ୍ୟୁ ଭାବନା ଓ ସର୍ବୋପରି ଏକ ସର୍ବଶକ୍ତିମାନ ସତ୍ତାଠାରେ ଭରସା ସ୍ଥାପନ କବିତାର ମୁଖ୍ୟ ଭାବବସ୍ତୁ ହୋଇଛି । ଉତ୍ତର ଷାଠିଏରୁ ବହି ଆସିଥିବା କାବ୍ୟଧାରାର ପ୍ରତୀକ ରମାକାନ୍ତ, ସୀତାକାନ୍ତ, ସୌଭାଗ୍ୟ ପ୍ରଭୃତିଙ୍କ ସହିତ ତାଳ ଦେଇ ରାଜେନ୍ଦ୍ର କିଶୋର ପଣ୍ଡା, ଫଣୀ ମହାନ୍ତି, କମଳାକାନ୍ତ ଲେଙ୍କା ଓ ଜୟକୃଷ୍ଣ ବାରିକ ପ୍ରଭୃତି କବିତା କ୍ଷେତ୍ରରେ ନୂତନ ପରୀକ୍ଷା ନିରୀକ୍ଷା ଚଳାଇଛନ୍ତି ।

ଏ ପରିପ୍ରେକ୍ଷୀରେ ଜୟକୃଷ୍ଣ ବାରିକଙ୍କର "ହାତରେ କିଛି ନାହିଁ" କବିତା ଗ୍ରନ୍ଥ ଆଲୋଚନା କରାଯାଇପାରେ । ୫୦ଟି କବିତାର ସମାହାରରେ ଏହି କାବ୍ୟ ଗ୍ରନ୍ଥ ବିଭିନ୍ନ ସ୍ୱାଦର କବିତାରେ ଗ୍ରନ୍ଥିତ ହୋଇଛି । ପ୍ରତ୍ୟେକ କବିତାର ପ୍ରତି ଭିନ୍ନ ଓ ରୂପକଳ୍ପର ପ୍ରୟୋଗ କବିତାର ଆଙ୍ଗିକତାକୁ ବୃଦ୍ଧି କରିବାରେ ସାହାଯ୍ୟ କରିଛି ।

"ହ୍ୟାଲୋ ଚଉତିରିଶ" ଜୀବନର ମୂଲ୍ୟବୋଧ ପ୍ରତି ସଚେତନତା ଏବଂ କ୍ଷୟିଷ୍ଣୁ ସମାଜରେ ବଢ଼ୁଥିବା ହଜିଯାଉଥିବା ସମୟ ଭିତରେ ମଣିଷ ମନର ଚିତ୍ତ-ଗ୍ଳାନିଶୀଳତାର ଏକ ସଫଳ ଚିତ୍ରଣ ।

"ନିଜର ସ୍ନେହଶୀଳ ଆର୍ଦ୍ରତାପ ଡିଗ୍ରୀ । ରଫୁ ହୋଇଥିବା ପାଇଜାମା କୁର୍ତ୍ତାର ପ୍ରିୟ ଦୀର୍ଘଶ୍ୱାସ, ନିଦ୍ରାର ଶରୀର ବୃଦ୍ଧି ନିମିତ୍ତ ସ୍ଲିପିଙ୍ଗ ଟାବ୍ଲେଟର ନିର୍ଭରଯୋଗ୍ୟ କୃପାରହସ୍ୟ/ସାବିତ୍ରୀ, ମିନତି, ସିପ୍ରା, ଅନୁରାଧା ପାଇଁ ପାଗଳାମିର ଗମ୍ଭୀରତମ ଚିନ୍ତବୃଦ୍ଧି/ସୁର ଦାସ, ଚୈତନ୍ୟ, ପରମହଂସ, ସ୍ୱାମୀଜୀଙ୍କ ଅତୃପ୍ତ ସିଡ଼ିର ପାଖେ/ସ୍ୱଦେଶୀକ ଆଗ୍ରହର ଅଭ୍ୟୁତ୍ଥାନ ଚିତ୍କାର କରେ, ହ୍ୟାଲୋ ଚଉତିରିଶ··· ହ୍ୟାଲୋ ଚଉତିରିଶ···ହ୍ୟାଲୋ ।"

ଯୌବନ ଅତିକ୍ରାନ୍ତ । ମଣିଷର ମନ ସଚେତନ ଏହି ଅତିକ୍ରାନ୍ତ ଯୌବନ ପ୍ରତି ଏବଂ ତା' ମନରେ ଆଧ୍ୟାତ୍ମିକ ଚେତନା ପ୍ରତି ଅସଂଖ୍ୟ ଅନୁରାଗ । ମାତ୍ର ସେହି ଏକା ଦ୍ୱନ୍ଦ୍ୱ । ଏକ ପକ୍ଷରେ ଜୀବନ ପ୍ରତି ଲୋଭ, ଅଭିଳାଷିତ ବସ୍ତୁ ପ୍ରତି ଆଗ୍ରହ ଏବଂ ଅପର ପକ୍ଷରେ ମୃତ୍ୟୁ ପ୍ରତି ସଚେତନ ଓ ତଜ୍ଜନିତ ଭୟର ବ୍ୟାପକ ଚିତ୍ରଣ କବିତାର ସୌଷ୍ଠବକୁ ମଣ୍ଡିତ କରେ । ତାଙ୍କର ପ୍ରତ୍ୟେକ କବିତାରେ ଏହି ମାନସିକ ଦ୍ୱନ୍ଦ୍ୱ, ବିଚ୍ଛିନ୍ନତାବୋଧ ଓ ସର୍ବୋପରି ମୃତ୍ୟୁ ପ୍ରତି ସଚେତନତା ସାଙ୍ଗକୁ କାବ୍ୟଧର୍ମିତାର ରୂପକଳ୍ପ, ମିଥ୍ ଇତ୍ୟାଦିର ବ୍ୟାପକ ପ୍ରୟୋଗ ଦେଖିବାକୁ ମିଳେ । 'ମୀରାବାଈ' କବିତାରେ ମୀରାବାଈକୁ ସମ୍ବୋଧନ କରି ଯେଉଁ ମୂଲ୍ୟବୋଧକୁ ଫେରିପାଇବାର ବ୍ୟର୍ଥତାର ଶୀକାରରେ ଶିକାରୀ ହୋଇଛନ୍ତି କବି ବାରିକ୍ । ସତ୍ୟାଶ୍ରୟୀ କବି କେବଳ ଅସତ୍ୟ ସନ୍ଧାନ କରୁଛନ୍ତି । ପୃଥିବୀର ପ୍ରତ୍ୟେକ ବସ୍ତୁ ତାଙ୍କ ନିକଟରେ ଅସତ୍ୟ ପ୍ରତୀତ ହେଉଛି । ପ୍ରାଚୀନ ମୂଲ୍ୟବୋଧର ପିରାମିଡ୍ ଉପରେ ଗଢ଼ିଉଠୁଛି ଅସତ୍ୟ ସହର । ତେଣୁ ସେ କହୁଛନ୍ତି—

ସବୁ ସତ୍ୟ ସତ୍ୟ ବୋଲି ମନେ ହୁଏନା, ହୁଏତ ସତ୍ୟର ଲୀଳା, ନିରୁପାୟ ମହାଶୂନ୍ୟରୁ ଖସିପଡ଼ୁଛି ଉଲ୍କାର ବିଲୟମାନ ରୂପ ଧରି ଗ୍ରୀଡ ଭିତରର ସମସ୍ତ ରାଜହଂସ ଏକାବେଳକେ ଦେଖିବାକୁ ଗୃହାନ୍ତ ରଙ୍ଗପସରାର ନିଃଶବ୍ଦ ଦୃଶ୍ୟ ସେ କି'ଣ ତମେ ନା ମୋ ସ୍ୱଗତଃ ଶୀତ୍କାର ?"

କବିର ସ୍ୱର ଜୀବନ ଯନ୍ତ୍ରଣାର ସ୍ୱର । ସଂଗ୍ରାମର ସ୍ୱର । ବଞ୍ଚିବା ପାଇଁ ସେ ଆଧୁନିକ ସମାଜରେ ସଂଗ୍ରାମ କରି ଚାଲିଛି । ତା'ର ଆଶା ଅନେକ ମାତ୍ର ବ୍ୟର୍ଥତାରେ ସେ ଜୁଡ଼ୁବୁଡ଼ୁ । କୌଣସି ଆଶା ଫଳବତୀ ହେବ, ଏ କେବଳ ତା' ନିକଟରେ ସ୍ୱପ୍ନ । "ନୂତନ ଭୂମିକା ନେଇ ମଞ୍ଚେ ଓହ୍ଲାଇଛି" କବିତାରେ କବି ଆଧୁନିକ ସମାଜର ସଂଘର୍ଷର ସ୍ୱର, ତଜ୍ଜନିତ କ୍ଳାନ୍ତ ଓ ବ୍ୟର୍ଥତା ଏବଂ ସର୍ବୋପରି ନିଜକୁ ନିଜେ ସାନ୍ତ୍ୱନା ଦେଇ ଏହି ଅବକ୍ଷୟିଷ୍ଣୁ ସମାଜରେ ଯେନ ତେନ ପ୍ରକାରେଣ ସମୟକୁ ଅତିବାହିତ କରିବା ପ୍ରତି ସେ ସଚେତନ । ତେଣୁ କହୁଛନ୍ତି—

"ସୁତରାଂ, ମୋର ବନ୍ଧୁ ପାପର ଜମିରେ କେହି ଯଦି ସତ୍ତ୍ୱ ଚାଷ କରେ,
ସଂଘର୍ଷର ମୂଳମନ୍ତ୍ର ରୋପିବ ସେଠାରେ, ମୁଁ ଜୀବନ ଉପରେ
ଅହରହ ଦୌଡ଼ି ଦୌଡ଼ି ଦୟା କ୍ଷମା କରୁଣାର ବିଜ୍ଞାନ ଓ କଳା ଭୁଲିଯାଏ···
କ୍ଷୁଧା—ମୋର ଜନ୍ମଗତ ଅଧିକାର
କ୍ରୋଧ—ମୋର ଆତ୍ମାର ଅପତ୍ୟ
ଏବଂ
ଅବିଶ୍ୱାସ : ମୋ ଦେହର ଶିରା ଓ ଧମନୀ······

ଏ ଚିତ୍ର ଆଧୁନିକ ମଣିଷର ଦିଗ୍‌ଭ୍ରାନ୍ତ ବ୍ୟର୍ଥତାର ଚିତ୍ର । ଏହା ନିଚ୍ଛକ ସତ୍ୟର ବିଶ୍ଳେଷଣ । ଏଥିରେ ଛଳନା ବା କୃତ୍ରିମତା ନାହିଁ । କବି ନିଜକୁ ଖୋଲିଦେଇଛନ୍ତି ଅନ୍ୟ ପାଖରେ, ଆବରଣ ମୁକ୍ତ କରି ସମାଜକୁ ସଚେତନ କରିବାକୁ ପ୍ରଚେଷ୍ଟା କରିଛନ୍ତି । ଏ ଜୀବନ ଅଳୀକ, ସମସ୍ତ ମୂଲ୍ୟବୋଧ ମୂଲ୍ୟହୀନ, ମୃତ୍ୟୁ ହିଁ କେବଳ ସତ୍ୟ ।

" ଏ ଉଦୀୟମାନ ସୂର୍ଯ୍ୟର ସହସ୍ର ରଶ୍ମି ଆଡ଼େ ମୁହଁକରି ଛିଡ଼ାହୋଇ ଜବାକୁସୁମ ସଙ୍କାଶଂର ପ୍ରସକ୍ତ କାହାଣୀ —

କିମ୍ବା ଭାଗବତ ପୃଷ୍ଠାରେ ଅମରତ୍ୱର ବିଶୋଧନ କିମ୍ବା ଅନୁଭବ କରୁ କରୁ ବ୍ୟକ୍ତିଗତ ଜିବେ ଆଁଓ୍ୱାରର ଘଣ୍ଟା ଶୁଣିବ ଅନେକ ।"

ପ୍ରତ୍ୟେକ କବିତାରେ ମୃତ୍ୟୁ ପ୍ରତି ସଚେତନତା ଓ ସମାଜର ନିର୍ମମ ନିଷ୍ଠୁର ପରିହାସର ସଫଳ ଚିତ୍ରଣ ଲକ୍ଷ୍ୟ କରିଯାଏ ।

"ଝୁଲିବା ରାସ୍ତାରେ ଯେତେ ବର୍ଷାର ନିଶ୍ୱାସ ଅବା ବିଦ୍ୟୁସର ଯେତେକ ବକ୍ତୃତା ଫେରିଯାଉ ଏ ଦେହର ଅସଂଖ୍ୟ ଉଠାଣି ଚଢ଼ି ଅନ୍ୟ ଏକ ମହାସମାପ୍ତିକୁ" ।

ବିଭିନ୍ନ ସ୍ଥାନରେ ସତ୍ୟର ଅନୁସନ୍ଧାନ କରୁ କରୁ କବି ମନର ହତାଶା ଓ ବ୍ୟର୍ଥତାର ଚିତ୍ର ସୁସ୍ପଷ୍ଟ । ସେ ନୈରାଶ୍ୟର ଗଭୀର ଅନ୍ଧକାର ମଧ୍ୟରେ ନିଜକୁ ନିକ୍ଷେପିତ କରିଛନ୍ତି । ମୃତ୍ୟୁକୁ ଦେଖିବାଠାରୁ ଆରମ୍ଭ କରି ଜୀବନର ଜ୍ୱଳନକୁ ଉପଭୋଗ କରିବା ଭିତରେ କବି ବାରିକଙ୍କର ପ୍ରତ୍ୟେକ କବିତାରେ ନୈରାଶ୍ୟବାଦର ଚିତ୍ର ସୁସ୍ପଷ୍ଟ । ବାସ୍ତବଧର୍ମୀ କବି ବିଭିନ୍ନ ଶୈଳୀ ଓ ଭାଷାରେ କେବଳ ସେହି ଗୋଟିଏ କଥା । ଏ ସମାଜରେ ଘଟୁଥିବା ଘଟଣା ଓ ବ୍ୟକ୍ତି ଚେତନାର ମାନସିକ ଦ୍ୱନ୍ଦ୍ୱ ଓ ବ୍ୟକ୍ତିର ନୈରାଶ୍ୟବାଦ ଭୂମିକା ସମ୍ପର୍କରେ ସଚେତନତାର ସୂଚନା ଦେଇଛନ୍ତି ।

କାବ୍ୟଗ୍ରନ୍ଥର ଶୀର୍ଷକ କବିତା " ହାତରେ କିଛି ନାହିଁ " କାବ୍ୟର ଶେଷ କବିତାରେ ସେହି ଅସହାୟତାର ସ୍ୱର । ସେହି ନିଦାରୁଣ ଦୁଃଖର ବ୍ୟାପକ ବର୍ଣ୍ଣନା ।

" ସ୍ୱର୍ଗର ଠିକଣା ଜାଣିବା ପାଇଁ
ଅନ୍ଧକାର ସିଢ଼ିଭାଙ୍ଗି ଅଗସରି ହେଉ ହେଉ ନଇଁ ଆସେ ରାତି

ସମସ୍ତର ଅନବଗୋଚର ସ୍ରୋତେ ଜଳେ, ରୌଦ୍ରେ, ଶିଶିରେ, ହାଓ୍ୱାରେ, ଫୁଟିଉଠେ ପ୍ରତ୍ୟେକଙ୍କ ହାତେ ଜନ୍ମର କୋରକ ।

ଓ ମୋ ହାତରେ କେବେ ହେଲେ କିଛି ନାହିଁ
ମୋ ହାତରେ ବର୍ତ୍ତମାନ କିଛି ନାହିଁ
ମୋ ହାତରେ କାଲି ପାଇଁ କିଛି ନାହିଁ ।"

ମୋଟାମୋଟି ଭାବରେ ଏକ ବିଶ୍ଳେଷଣ କଲେ କୁହାଯାଇପାରେ କବି ବାରିକ୍ ସବୁ କ୍ଷେତ୍ରରେ ହତାଶାବୋଧ ଅନୁଭବ କରିଛନ୍ତି । ବାରମ୍ବାର ମୃତ୍ୟୁପ୍ରତି ସଚେତନ ହୋଇଛନ୍ତି । ସ୍ୱପ୍ନଦ୍ରଷ୍ଟା ହେବା ପରିବର୍ତ୍ତେ ଅତି ବାସ୍ତବଧର୍ମୀ ହୋଇ ମାନସିକ ଜ୍ୱଳନରେ ପୀଡ଼ିତ ହୋଇପଡ଼ିଛନ୍ତି ।

ସମାଜରେ ଦ୍ୱନ୍ଦ୍ୱ, ସଂଘର୍ଷ ଘଟୁଛି ; ଆଦର୍ଶବାଦର ନୈତିକତା ଭୁଶୁଡ଼ିପଡ଼ି ନୈତିକତା ବିହୀନ ହେବାକୁ ସମାଜ ଧାଉଁଛି । ମାତ୍ର କବି ସେହି ଗୋଟିଏ ସତ୍ୟକୁ ପାଇ ଅନ୍ତରଙ୍ଗ ସତ୍ୟତା ବା ସବୁର ଊର୍ଦ୍ଧ୍ୱରେ ଥିବା ସତ୍ୟଟି ପ୍ରତି ଗୁରୁତ୍ୱ ଆରୋପ କରିପାରିନାହାନ୍ତି । ମୃତ୍ୟୁ ପ୍ରତି ଅତ୍ୟଧିକ ସଚେତନ ହୋଇ ସେ ପଳାୟନପନ୍ଥୀର ଭୂମିକା ଗ୍ରହଣ କରିଛନ୍ତି । ଏହା ସାଙ୍ଗକୁ ଅତ୍ୟଧିକ ଗଦ୍ୟ ଶୈଳୀ ତାଙ୍କର ସହଜାତ କାବ୍ୟଧର୍ମୀ ବା କାବ୍ୟର ସୌଷ୍ଠବକୁ ନଷ୍ଟ କରିଛି । ହତାଶାବୋଧର କବି ବାରିକ୍ଙ୍କର କବିତା ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏକ ସ୍ଥାନ ନିଶ୍ଚୟ ଦାବୀ କରେ ଏଥିରେ ସନ୍ଦେହ ନାହିଁ ।

